# ଜଣେ ଗଣିତଜ୍ଞଙ୍କର
# ଆତ୍ମଚିନ୍ତନ

**(A MATHEMATICIAN'S APOLOGY)**

ଜି.ଏଚ୍. ହାର୍ଡି

ଅଗ୍ରଲେଖ

ସି.ପି. ସ୍ନୋ

କେମ୍ବ୍ରିଜ, ୟୁନିଭରସିଟି ପ୍ରେସ୍

# ଜଣେ ଗଣିତଜ୍ଞର ଆତ୍ମଚିନ୍ତନ

| | |
|---|---|
| ଲେଖକ | ଜି.ଏଚ୍. ହାର୍ଡି |
| ଅନୁବାଦ | ଲମ୍ବୋଦର ପ୍ରସାଦ ସିଂହ |
| ପ୍ରକାଶକ | **ଶିକ୍ଷାସନ୍ଧାନ**<br>ଏନ୍.ଡ଼ି -୭, ଭି.ଆଇ.ପି. ଏରିଆ<br>ଆଇ.ଆର.ସି ଭିଲେଜ୍ , ଭୁବନେଶ୍ୱର-୧୫ |
| ପ୍ରକାଶନ କାଳ : | ୨୦୧୨ |
| ଅକ୍ଷରସଜ୍ଜା ଓ ପ୍ରଚ୍ଛଦ | ପ୍ରମୋଦ କୁମାର ସାହୁ |
| ମୁଦ୍ରଣ | **ଶିକ୍ଷାପ୍ରକାଶନୀ**<br>ଭି.ଆଇ.ପି. ଏରିଆ , ଆଇ.ଆର୍.ସି. ଭିଲେଜ୍<br>ଭୁବନେଶ୍ୱର |
| ମୂଲ୍ୟ | ଟ. ୭୫/- |

**JANE GANITAJNARA ATMA CHINTAN**

| | |
|---|---|
| Author | G.H.Hardy |
| Translated by | Lambodar Prasad Singh |
| Published by | **Sikshasandhan**<br>V.I.P. Area, IRC Village,<br>Bhubaneswar |
| Date of Publication | 2012 |
| Printed at | **Sikshaprakashani**<br>V.I.P. Area, IRC Village,<br>Bhubaneswar - 751015 |
| Type Setting & Cover design | **Pramod Sahoo** |
| Price | Rs. 75/- |

# ଉତ୍ସର୍ଗ

ଜନ୍ ଲୋମାସ ଯାହାଙ୍କ ପ୍ରେରଣାର ଫଳଶ୍ରୁତି ଏ ବହିଟି

# କୃତଜ୍ଞତା

ସୃଜନଶୀଳତା ଏକ ନିଗୁଢ଼ ରହସ୍ୟ । "କଣ୍ଟକେନୈବ କଣ୍ଟକଂ" ଭଳି ମଣିଷ ନିଜ ମସ୍ତିଷ୍କର ସୃଜନଶୀଳତାକୁ ଅସ୍ତ୍ରକରି ପ୍ରକୃତିର ରହସ୍ୟ ଭେଦ କରିବାକୁ ଯତ୍‌ସାମାନ୍ୟ ସମର୍ଥ ହୋଇଛି । ସୃଜନଶୀଳ ମସ୍ତିଷ୍କର ସୃଷ୍ଟି ସମୁଚ୍ଚୟ ଜ୍ଞାନ ସୃଷ୍ଟି ମାଧ୍ୟମରେ ସଭ୍ୟତାକୁ ରୂପ ଦେଇ ଚାଲିଛନ୍ତି । ସେତକ ହିଁ ମାନବ ସଭ୍ୟତାର ସର୍ବଶ୍ରେଷ୍ଠ ଐତିହ୍ୟ । ସେହି ଧାରାରେ ଜି.ଏଚ୍. ହାର୍ଡି ଥିଲେ ତାଙ୍କ ସମୟର ପୃଥିବୀର ଜଣେ ଅଗ୍ରଗଣ୍ୟ ପ୍ରତିଭାଧାରୀ ଗଣିତଜ୍ଞ । ତାଙ୍କ ନିଜ ଭାଷାରେ ଜଣେ 'ଶୁଦ୍ଧ ଗଣିତଜ୍ଞ' । ଗଣିତର ମାହାତ୍ମ୍ୟ ଓ ଗଣିତ ଗବେଷଣା କୁ ନେଇ ନିଜ ସୃଜନଶୀଳତାର ଏକ ସୁନ୍ଦର ଆଲେଖ୍ୟ ହେଉଛି ଇଂରାଜୀରେ ଲିଖିତ "ଏ ମାଥମେଟିସିଆନସ୍ ଆପୋଲୋଜି" । ଇଂରାଜୀ ଭାଷାରେ ଏହା ଏକ ଅସାମାନ୍ୟ କୃତି । ଥରେ ପଢ଼ିଲେ ମନ ସ୍ୱତଃ ଟାଣିହୋଇଯାଏ ପଢ଼ିବାକୁ ବାରମ୍ବାର । ପ୍ରଖ୍ୟାତ ବୁଦ୍ଧିଜୀବୀ ସି.ପି. ସ୍ନୋଙ୍କ ସୁଦୀର୍ଘ ଭାବୋଦ୍ଦୀପକ ମୁଖବନ୍ଧ ବହିଟିର ଅନ୍ୟତମ ଆକର୍ଷଣ ।

ଜି.ଏଚ୍. ହାର୍ଡିଙ୍କ ଜୀବନ ସହ ଓତଃପ୍ରୋତଃ ଭାବେ ଜଡିତ ଅଦ୍ୱିତୀୟ ଗାଣିତିକ ପ୍ରତିଭା ରାମାନୁଜନଙ୍କ ଜୀବନ କାହାଣୀ ପ୍ରତ୍ୟେକ ଭାରତୀୟଙ୍କ ମନରେ ଏକ ସ୍ୱତନ୍ତ୍ର ଭାବାବେଗ ସୃଷ୍ଟି କରେ । ସାମନ୍ତ ଚନ୍ଦ୍ରଶେଖର ଯୋଗେଶ ଚନ୍ଦ୍ର ରାୟଙ୍କ ଆବିଷ୍କାର ହୋଇଥିବା ଭଳି ରାମାନୁଜନ ହାର୍ଡିଙ୍କ ଆବିଷ୍କାର । ସେ ହିଁ ରାମାନୁଜନଙ୍କୁ ବିଶ୍ୱବିଖ୍ୟାତ କେମ୍ବ୍ରିଜ ବିଶ୍ୱବିଦ୍ୟାଳୟକୁ ନେଇଥିଲେ । କେମ୍ବ୍ରିଜର ଜ୍ଞାନଦୀପ୍ତ ପରିବେଶରେ ହାର୍ଡିଙ୍କ ସହଯୋଗିତାରେ ରାମାନୁଜନଙ୍କ ପ୍ରତିଭା ପ୍ରସ୍ଫୁଟିତ ହୋଇ ଗଣିତ ଗବେଷଣାର ସମୁଜ୍ଜ୍ୱଳ କିର୍ତ୍ତୀମାନ ସ୍ଥାପନ କରିଥିଲା । କେବଳ ଗଣିତ କ୍ଷେତ୍ରରେ ନୁହେଁ ବ୍ୟକ୍ତିଗତ ସମ୍ପର୍କ କ୍ଷେତ୍ରରେ ମଧ୍ୟ ଦୁହିଁଙ୍କ ମଧ୍ୟରେ ଥିବା ଶ୍ରଦ୍ଧା, ସମ୍ମାନ ଓ ସୌହାର୍ଦ୍ଦ୍ୟର ଏକ ମାର୍ମିକ ଉପାଖ୍ୟାନ । ହାର୍ଡିଙ୍କ ସ୍ୱଗତୋକ୍ତି, "ଫମ୍ପା ଆସ୍ଫାଳନ କରୁଥିବା ଲୋକଙ୍କ ଗହଣରେ ବା କେଉଁ ଏକ ବିଷାଦଭରା ମୁହୂର୍ତ୍ତରେ ମୁଁ ନିଜକୁ ନିଜେ କହିହୁଏ ଯେ ମୁଁ ତ ରାମାନୁଜନ ଓ ଲିଟ୍‌ଲଉଡ୍‌ଙ୍କ ଭଳି ଗଣିତଜ୍ଞମାନଙ୍କ ସହ ସମାନ ସାମର୍ଥ୍ୟ ସହ ଗଣିତ ଗବେଷଣା କରିପାରିଛି । ଏହାଠୁଁ ବଳି ମଣିଷ ଜୀବନର ଅଧିକ କ'ଣ ସଫଳତା ଥାଇପାରେ !" ଯୁଗଯୁଗ ଧରି ରବୀନ୍ଦ୍ର ନାଥଙ୍କ "ଏକଲା ଚଲୋ" ପରି ସୃଜନଶୀଳ

ମଣିଷକୁ ସାନ୍ତ୍ୱନା ଦେଇ ଚାଲିଥିବ ।

ଏଭଳି ଏକ ଅନନ୍ୟ କୃତିର ମୁଖପାଠକୁ ମୋ' ଭାଷାର ପାଠକ ମାନଙ୍କ ପାଖରେ ପହଞ୍ଚାଇବାର ପ୍ରେରଣାରୁ ଏ ଅନୁବାଦର ଜନ୍ମ । ମୋ'ର ଭାଷାଗତ ଅସାମର୍ଥ୍ୟ ଓ ଚିନ୍ତନର ଅପରିଚ୍ଛନ୍ନତା ସତ୍ତ୍ୱେ, "ଆତ୍ମ ଚିନ୍ତନ" ପାଠକର ଅନ୍ତରାତ୍ମାକୁ ସାମାନ୍ୟ ଆନ୍ଦୋଳିତ କରିବାରେ ସକ୍ଷମ ହେଲେ ଶ୍ରମ ସାର୍ଥକ ହେବ ।

କହିବା ବାହୁଲ୍ୟ ଯେ ଅନୁବାଦର ପ୍ରେରଣା ଦାନା ବାନ୍ଧିବା ଦିନଠାରୁ ସୂର୍ଯ୍ୟାଲୋକ ଦେଖିବା ଯାଏ ବନ୍ଧୁ ବନ୍ଧୁ ବିଭିନ୍ନ ଭାବରେ ମୋତେ ଅକୁଣ୍ଠ ସାହାଯ୍ୟର ହାତ ବଢ଼ାଇଛନ୍ତି । ମୋର ବନ୍ଧୁ ପ୍ରଫେସର ହରିହର ମିଶ୍ର ମତେ କିଛି କିଛି ଲେଖିବାକୁ ସବୁବେଳେ ଉତ୍ସାହିତ କରନ୍ତି । ମୋର ଛାତ୍ର ବିବେକାନନ୍ଦ ଓ ଓଡ଼ିଆ ପ୍ରଫେସର ଡଃ ସୁରେନ୍ଦ୍ର ନାଥ ଦାଶ ସମୟ ଦେଇ ମୋ'ର ପାଣ୍ଡୁଲିପିଟି ପଢ଼ିଛନ୍ତି । କିନ୍ତୁ ଉତ୍କଳ ବିଶ୍ୱବିଦ୍ୟାଳୟ ଇଂରାଜୀ ପ୍ରଫେସର ଯତୀନ ନାୟକ କେବଳ ମତେ ଏପରି ଏକ ଉଦ୍ୟମରେ ଆଗଭର ହେବାକୁ ପ୍ରେରଣା ଯୋଗାଇ ନାହାନ୍ତି କି ପାଣ୍ଡୁଲିପିଟି ପଢ଼ି ମୋ' ଅସାମର୍ଥ୍ୟ ଉପରେ ତାଙ୍କ ଅଭିଜ୍ଞତା ଓ ସାମର୍ଥ୍ୟର ପ୍ରଲେପ ଦେଇନାହାନ୍ତି, ଅନୁବାଦଟିକୁ ତାଙ୍କ ସୁପରିଚିତ 'ଶିକ୍ଷାସନ୍ଧାନ' ସଂସ୍ଥା ଦ୍ୱାରା ପ୍ରକାଶନର ଦାୟିତ୍ୱ ମଧ୍ୟ ନେଇଛନ୍ତି । ସମସ୍ତଙ୍କ ନିକଟରେ ମୁଁ ଋଣ ସ୍ୱୀକାରପୂର୍ବକ ହାର୍ଦ୍ଦିକ କୃତଜ୍ଞତା ଜଣାଉଛି । ଭାଷା, ଭାବ ଓ ମୁଦ୍ରଣର ସମ୍ଭାବ୍ୟ ତ୍ରୁଟି ପାଇଁ କ୍ଷମା ପ୍ରାର୍ଥନା କରି ରହୁଛି ।

ଲମ୍ବୋଦର ପ୍ରସାଦ ସିଂହ

# ଅଗ୍ରଲେଖ

ସବୁ ସନ୍ଧ୍ୟା ଭଳି ସେ ଥିଲା ଏକ ସାଧାରଣ ସନ୍ଧ୍ୟା । ସବୁଦିନ ଭଳି ସେଦିନ ମଧ୍ୟ କ୍ରାଏଷ୍ଟ କଲେଜର ହାଇଟେବୁଲରେ ରାତ୍ରି ଭୋଜନ ପାଇଁ ଫେଲୋମାନେ ଏକାଠି ହୋଇଥିଲେ । ସେମାନଙ୍କ ଭିତରେ କିନ୍ତୁ ଥିଲେ ଜଣେ ନୂଆ ଅତିଥି, ଜି.ଏଚ୍. ହାର୍ଡ଼ି । ସେ ଅଳ୍ପଦିନ ପୂର୍ବରୁ କେମ୍ବ୍ରିଜକୁ ଫେରି ଆସିଥାଆନ୍ତି ସାଡଲେରିଆନ ପ୍ରଫେସର ଭାବରେ । ମୁଁ ତାଙ୍କ ବିଷୟରେ କେମ୍ବ୍ରିଜ ବିଶ୍ୱବିଦ୍ୟାଳୟର ଯୁବ ଗଣିତଜ୍ଞ ମାନଙ୍କ ଠାରୁ ବହୁତ କିଛି ଶୁଣିଥିଲି । ସେ ଫେରି ଆସିଥିବାରୁ ସେମାନେ ବହୁତ ଖୁସି ଥିଲେ । ସେମାନଙ୍କ ଦୃଷ୍ଟିରେ ହାର୍ଡି ଥିଲେ ଜଣେ ସଚ୍ଚା ଗଣିତଜ୍ଞ । ପଦାର୍ଥ ବିଜ୍ଞାନୀମାନେ ସବୁବେଳେ ଜପି ହେଉଥିବା ଡିରାକ ଓ ବୋହରଙ୍କ ଭଳି ନୁହଁନ୍ତି । ସେ ଏକାଧାରରେ ଅଣପାରମ୍ପରିକ, ଅବାଗିଆ, ବିକଳ୍ପ ଅନୁସନ୍ଧୀ ଓ ଯେ କୌଣସି ବିଷୟବସ୍ତୁ ଉପରେ ଯେ କୌଣସି ସମୟରେ ଆଲୋଚନା ପାଇଁ ପ୍ରସ୍ତୁତ । ଏଥିଲା ୧୯୩୧ ମସିହାର କଥା । ସେତେବେଳକୁ ଗୋଟିଏ ପଦ ଇଂରାଜୀ କଥନ ଭିତରକୁ ପ୍ରବେଶ କରିନଥିଲା, ନଚେତ୍ ସେମାନେ ହୁଏତ କହି ଥାଆନ୍ତେ ଯେ ସେ ଜଣେ "ଷ୍ଟାର" ।

ମୁଁ ତେଣୁ ତାଙ୍କୁ ଭଲଭାବରେ ତାଳୁରୁ ତଳିପା ଯାଏ ନିରୀକ୍ଷଣ କରିବାକୁ ଲାଗିଲି । ସେତେବେଳକୁ ତାଙ୍କ ବୟସ ପଚାଶ ଉପରେ । ମୁଣ୍ଡବାଳ ଧଳା ହୋଇଯାଇଥାଏ, ଖରା ଖାଇ ଖାଇ ଦେହ ଲୋହିତ ଭାରତୀୟଙ୍କ ପରି କଂସା ରଙ୍ଗ ଧରି ନେଇଥାଏ । ମୁହଁ ଥିଲା ତାଙ୍କର ଖୁବ୍ ଆକର୍ଷଣୀୟ; ଉଚ୍ଚ ଗାଲହାଡ଼, ସରୁ ନାକ । ମୁହଁରେ ସଂଭ୍ରମ ଓ ସଂଯମର ଛାପ, କିନ୍ତୁ ଗାଁ ଦାଣ୍ଡରେ ଖେଳୁଥିବା ପିଲାଙ୍କ ଭଳି ହସଖୁସିରେ ନିଜକୁ ହଜାଇ ଦେବାର ଦ୍ୱିଧା ନଥାଏ । ଅସ୍ୱଚ୍ଛ ଚିଲା ଆଖି ଦୁଇଟି ଚଢ଼େଇ ଆଖି ପରି ଉଜ୍ଜ୍ୱଳ । ଗଭୀର ଚିନ୍ତାଶକ୍ତି ସମ୍ପନ୍ନ ଲୋକମାନଙ୍କ ଭିତରେ ଏଭଳି ଆଖି ବିରଳ ନୁହେଁ । ସେତେବେଳେ କେମ୍ବ୍ରିଜରେ ଅସାଧାରଣ ଓ ବିଖ୍ୟାତ ଲୋକଙ୍କ ଭିଡ; ତଥାପି ସେହି ରାତିରେ ମତେ ଲାଗିଲା ଯେପରି ହାର୍ଡି ଅନନ୍ୟ ।

ସେ କ'ଣ ପିନ୍ଧିଥିଲେ ମୋର ମୋଟେ ମନେ ନାହିଁ । ଗୋଟିଏ ଖେଳ କୋଟ୍ ଓ ଗାଉନ ତଳେ ନରମ ପଶମ ବସ୍ତ୍ର ଖଣ୍ଡେ ବୋଧେ ପିନ୍ଧିଥିଲେ । ଆଇନଷ୍ଟାଇନଙ୍କ ପରି ସେ ନିଜ ରୁଚି ଅନୁସାରେ ହିଁ ପିନ୍ଧୁଥିଲେ କିନ୍ତୁ ଦାମିକା ସିଲ୍‌କ ସାର୍ଟ ପ୍ରତି ଥିବା ତାଙ୍କ ଅହେତୁକ ଦୂର୍ବଳତା ତାଙ୍କ ପୋଷାକ ପତ୍ରରେ ବେଶ୍ କିଛି ବିବିଧତା ଆଣି ଦେଉଥିଲା । ଏହି କ୍ଷେତ୍ରରେ ସେ ଥିଲେ ଆଇନଷ୍ଟାଇନଙ୍କ ଠାରୁ ଅଲଗା ।

ଖାଇସାରି କମ୍ବିନେସନ ରୁମ ଟେବୁଲ ପାଖରେ ବସି ଆମେ ସବୁ ୱାଇନ ଉପଭୋଗ କଲାବେଳେ କେହି ଜଣେ ମତେ କହିଲେ ଯେ ହାର୍ଡି ମୋ ସହିତ କ୍ରିକେଟ ବିଷୟରେ କଥା ହେବାକୁ ଚାହୁଁଛନ୍ତି । ମୁଁ ମାତ୍ର ବର୍ଷକ ଆଗରୁ କଲେଜ-ଫେଲୋ ଭାବରେ ନିର୍ବାଚିତ ହୋଇଥାଏ । କ୍ରାଏଷ୍ଟ କଲେଜ ଛୋଟିଆ କଲେଜଟିଏ ହୋଇଥିବାରୁ ନୂଆ ପିଲାମାନଙ୍କ କଳାନୈପୁଣ୍ୟ ଓ ଖେଳକସରତ ଇତ୍ୟାଦିରେ ଉତ୍କର୍ଷ ଖବର ଖୁବ୍‌ଶୀଘ୍ର ଚରିଆଡେ ଖେଳିଯାଏ । ମତେ ହାର୍ଡିଙ୍କ ପାଖରେ ବସିବାକୁ କୁହାଗଲା କିନ୍ତୁ ମୋ ପରିଚୟ କିଛି ଦିଆଗଲା ନାହିଁ । ମୁଁ ପରେ ଯାହା ଆବିଷ୍କାର କଲି ହାର୍ଡି ଖୁବ୍ ଲାଜକୁଳା ପ୍ରକୃତିର, ସବୁ ଔପଚାରିକତାରୁ ସେ ଦୂରରେ ରହନ୍ତି । ବିଶେଷ କରି ପରିଚୟପ୍ରଦାନ ପର୍ବକୁ ତାଙ୍କର ଭୀଷଣ ଡର । କୃତଜ୍ଞତା ଜଣାଇବା ଢ଼ଙ୍ଗରେ ସେ କେବଳ ମୁଣ୍ଡକୁ ଟିକେ ତଳକୁ କରିଦେଲେ ଓ କୌଣସି ଗୌରଚନ୍ଦ୍ରିକା ବିନା ସିଧା ପଚାରିଲେ; "ତମେ କ୍ରିକେଟ ବିଷୟରେ କିଛି ଜାଣିଛ ବୋଲି ଆଶା କରାଯିବା କଥା । ନୁହେଁ କି ?" ମୁଁ "ହଁ" ମାରି ଅଳ୍ପ କିଛି ଜାଣିଛି ବୋଲି କହିଲି ।

ସାଙ୍ଗେ ସାଙ୍ଗେ ଆରମ୍ଭ ହୋଇଗଲା ଗୋଟେ ଛୋଟ କାଟର ରୀତିମତ୍ ପରୀକ୍ଷା । ମୁଁ ଖେଳୁଥିଲି କି ? ଖେଳୁଥିଲେ କି ପ୍ରକାର ଖେଳାଳି ମୁଁ ଥିଲି ? ମୁଁ ଅନୁମାନ କରିପାରିଲି ଯେ ଖେଳ ବିଷୟରେ ଅନେକ କିଛି ପଢ଼ାପଢ଼ି କରିଥିବା କିନ୍ତୁ ଥରେ ହେଲେ ଖେଳ ଖେଳିନଥିବା ଲୋକଙ୍କ ପ୍ରତି ତାଙ୍କର ଖୁବ୍ ଘୃଣା ଭାବ ଥିଲା । ଶିକ୍ଷିତ ଲୋକମାନଙ୍କ କ୍ଷେତ୍ରରେ ଏଭଳି ଦୃଷ୍ଟାନ୍ତ ବହୁତ ବେଶି । ମୋର ଯାହାକିଛି ଯୋଗ୍ୟତା ଥିଲା ସେ ବିଷୟରେ ଗାଇଗଲି । ମୋ ଉତ୍ତର ଗୁଡିକ ତାଙ୍କୁ ବୋଧହୁଏ ଟିକିଏ ବିଶ୍ୱାସଯୋଗ୍ୟ ବୋଧହେଲା । ସେ କ୍ରୀଡ଼ା କୌଶଳକୁ ନେଇ ଅଧିକ ଜଟିଳ ପ୍ରଶ୍ନ ପଚାରିବାକୁ ଆରମ୍ଭ କଲେ । ଯଥା, ବର୍ଷକ ପୂର୍ବରୁ ୧୯୩୦ରେ ଖେଳାଯାଇଥିବା ଶେଷ ଟେଷ୍ଟମ୍ୟାଚ୍‌ରେ ମୁଁ କାହାକୁ କ୍ୟାପଟେନ୍ ଭାବରେ ବାଛିଥାଆନ୍ତି ? ଯଦି ଚୟନକାରୀମାନେ ମୁଁ ଇଂଲଣ୍ଡକୁ ବଞ୍ଚାଇପାରିବେ ବୋଲି ଭାବି ମତେ ଖେଳାଇଥାଆନ୍ତେ

ତେବେ ମୋର ରଣନୀତି ଓ କୌଶଳ କ'ଣ ହୋଇଥାଆନ୍ତା ? ("ଯଦି ତୁମକୁ ଅଣଖେଳାଳୀ-କ୍ୟାପଟେନ ଭାବରେ କାର୍ଯ୍ୟନିର୍ବାହ କରିବାକୁ ସୁଯୋଗ ଦିଆଯାଏ") ଇତ୍ୟାଦି ଇତ୍ୟାଦି । ଟେବୁଲ ପାଖରେ ଆଉ କିଏ ବସିଛନ୍ତି ସେଥିପ୍ରତି ତାଙ୍କର ସାମାନ୍ୟ ନଜର ନଥାଏ । ସେ ପୁରାପୁରି କଥାରେ ମଜ୍ଜି ଯାଇଥାଆନ୍ତି ।

ଭବିଷ୍ୟତରେ ପରିଚୟର ଗଭୀରତାକୁ ନେଇ ବୁଝିପାରିଲି ଯେ ହାର୍ଡିଙ୍କର ଉପର ଠାଉରିଆ ଧାରଣା ବା ଅନୁମାନ ଉପରେ ଆଦୌ ବିଶ୍ୱାସ ନଥିଲା । ନିଜର ହେଉ ବା ଅନ୍ୟମାନଙ୍କର । ତାଙ୍କ ଦୃଷ୍ଟିରେ ଜଣଙ୍କର ଜ୍ଞାନ ମାପିବାର ଏକମାତ୍ର ଉପାୟ ହେଲା ପରୀକ୍ଷା । ଗଣିତ, ସାହିତ୍ୟ, ଦର୍ଶନ, ରାଜନୀତି ତଥା ଅନ୍ୟ ଯେ କୌଣସି କ୍ଷେତ୍ର ପାଇଁ ମଧ ତାଙ୍କ ମତରେ ଏହା ପ୍ରଯୁଜ୍ୟ । ଯଦି ଜଣେ ଠାସକୁ ମାରି ପରବର୍ତ୍ତୀ ପ୍ରଶ୍ନବାଣରେ ଟଳମଳ ହୁଏ ତେବେ ସେଥିପାଇଁ ସେ ଦାୟୀ । ତାଙ୍କର ଅସାଧାରଣ ଧୀଶକ୍ତି ସମ୍ପନ୍ନ ଓ ଧ୍ୟାନାବିଷ୍ଟ ମସ୍ତିଷ୍କ ପ୍ରଥମ-କଥା-ପ୍ରଥମେ ଉପରେ ସବୁବେଳେ ଜୋର୍ ଦେଉଥିଲା ।

ସେ ଦିନ ରାତିରେ କମ୍ବିନେସନ୍ ରୁମରେ ସେ କେବଳ ଜାଣିବାକୁ ଚାହୁଁଥିଲେ ଯେ ମୁଁ ତାଙ୍କର ଜଣେ ଭଲ କ୍ରିକେଟ ସହଚର ହୋଇପାରିବି କି ନାହିଁ । ଶେଷରେ ଶିଶୁସୁଲଭ ଅନାବିଳ ହସଟିଏ ହସି କହିଲେ ଫେନ୍ନର (ବିଶ୍ୱବିଦ୍ୟାଳୟ କ୍ରିକେଟ୍ ପଡିଆ)ରେ ଆସନ୍ତା ରତୁଟି ଖେଳ ଉପରେ ମଜାଦାର ଆଲୋଚନା ଭିତରେ କଟିବ ବୋଲି ଭାବୁଛି ।

ଠିକ୍ ଯେପରି ଲୟଡ଼ ଜର୍ଜ ଓ ମୋ' ଭିତରେ ସମ୍ପର୍କ ମଣିଷ ମସ୍ତିସ୍କର ଆକୃତି ବିଷୟରେ ଥିବା ତାଙ୍କର କୌତୁହଳକୁ ନେଇ ଗଢ଼ି ଉଠିଥିଲା, ଠିକ୍ ସେହିପରି ମୋ ଯୌବନର ବହୁତ ସମୟ କ୍ରିକେଟ ଖେଳରେ ବିତିଯିବା ହିଁ ହାର୍ଡ଼ିଙ୍କ ସହ ବନ୍ଧୁତ୍ୱର ଭିତ୍ତି ଥିଲା । କିନ୍ତୁ ଏହା ଥିଲା ମୋ ପାଇଁ ଏକ ବିରାଟ ସୌଭାଗ୍ୟର କଥା । ବୌଦ୍ଧିକ ସ୍ତରରେ ଏହା ଥିଲା ମୋ' ପାଇଁ ସବୁଠାରୁ ମୂଲ୍ୟବାନ ବନ୍ଧୁତ୍ୱ । ମୁଁ ଯାହା ଅଳ୍ପ ସମୟ ଆଗରୁ କହିଛି; ହାର୍ଡିଙ୍କ ମସ୍ତିସ୍କ ଥିଲା ଅଭୁତ ଧୀଶକ୍ତିଧାରୀ ଓ ମନଥିଲା ଏକାଗ୍ର । ଏପରିକି ତାଙ୍କ ଆଗରେ ଅନ୍ୟ ସମସ୍ତେ ଜଣାପଡୁଥିଲେ ଅତ୍ୟନ୍ତ ସାଧାରଣ, ଅସ୍ୱଚ୍ଛ ଓ ବିଭ୍ରାନ୍ତ । ସେ ଆଇନଷ୍ଟାଇନ୍ ବା ରଦରଫୋର୍ଡମାନଙ୍କ ଭଳି ବଡ଼ ଜିନିୟସ୍ ନଥିଲେ । ସେ ସ୍ୱଭାବ ସୁଲଭ ଢ଼ଙ୍ଗରେ କହିଛନ୍ତି ଯଦି ଜିନିୟସ ଶବ୍ଦର ପ୍ରକୃତ ଅର୍ଥ କରାଯାଏ ତେବେ ସେ ଆଦୌ ଜିନିୟସ ନୁହଁନ୍ତି । ଖୁବ୍‌ବେଶି ହେଲେ, ଅଳ୍ପ ସମୟ ପାଇଁ ସେ ପୃଥିବୀର ପଞ୍ଚମ ଶ୍ରେଷ୍ଠ ସଚ୍ଚା ଗଣିତଜ୍ଞ ବୋଲି ନିଜକୁ ଭାବୁଥିଲେ । ତାଙ୍କ ଚରିତ୍ର

ମଧ ତାଙ୍କ ମସ୍ତିଷ୍କ ପରି ଥିଲା ସୁନ୍ଦର ଓ ନିର୍ମଳ । ସେ ସବୁବେଳେ କହୁଥିଲେ ଯେ ତାଙ୍କ ବନ୍ଧୁ ଓ ସହଗବେଷକ ଲିଟଲଉଡ୍ ତାଙ୍କ ଠାରୁ ଯେ କୌଣସି ଦୃଷ୍ଟିରୁ ଉଚ୍ଚ ସ୍ତରର ଗଣିତଜ୍ଞ ଥିଲେ ଓ ତାଙ୍କ ଶିଷ୍ୟତୁଲ୍ୟ ରାମାନୁଜନ ସର୍ବଶ୍ରେଷ୍ଠ ଗଣିତଜ୍ଞମାନଙ୍କ ଭଳି ଅସାଧାରଣ ସୃଜନଶକ୍ତିର ଅଧିକାରୀ ଥିଲେ ।

ସେ ତାଙ୍କ ବନ୍ଧୁମାନଙ୍କ ବିଷୟରେ କହିଲାବେଳେ ଲୋକମାନେ ଭାବନ୍ତି ଯେପରି ସେ ନିଜକୁ ନ୍ୟୁନକରି ଦେଖୁଛନ୍ତି । ଏହା ସତ ଯେ ସେ ଖୁବ୍ ଉଦାର ଥିଲେ । ସେ ଈର୍ଷାଠାରୁ ମଧ ବହୁତ ଦୂରରେ ଥିଲେ, ଜଣେ ରକ୍ତମାଂସର ମଣିଷ ପକ୍ଷରେ ଯେତିକି ସମ୍ଭବ । କିନ୍ତୁ ତାଙ୍କ ବିଚାରକୁ ଅନୁଧାନ ନକଲେ ତାଙ୍କ ଗୁଣ ଗୁଡିକ ଆମେ ଠିକ୍ ଭାବରେ ଆକଳନ କରିପାରିବା ନାହିଁ । ଆସନ୍ତୁ ଶୁଣିବା "ଜଣେ ଗଣିତଜ୍ଞର ଆତ୍ମଚିନ୍ତନ" (A Mathematician's Apology)ବହିରେ ସେ ନିଜେ କହିଥିବା କଥାକୁ । "ଅବସାଦଘେରା ମୁହୂର୍ତ୍ତରେ ବା ଆତ୍ମଗର୍ବୀ ଲୋକମାନଙ୍କ ବାହାସ୍ଫୋଟ ଶୁଣିଶୁଣି କ୍ଳାନ୍ତ ହୋଇପଡିବା ବେଳେ ମୁଁ ନିଜକୁ ନିଜେ କହେ; "ଠିକ୍ ଅଛି, କିନ୍ତୁ ମୁଁ ତ ଲିଟିଲଉଡ୍ ଓ ରାମାନୁଜନମାନଙ୍କ ଭଳି ଗଣିତଜ୍ଞଙ୍କ ସହିତ ସମକକ୍ଷ ଭାବରେ ଗବେଷଣା କରି ଯେଉଁ ଗୋଟିଏ କାମ କରିଛି ତୁମେମାନେ କସ୍ମିନକାଳେ କରିପାରିନଥାନ୍ତ । ସେ ସବୁ ତୁମମାନଙ୍କ ସାଧ୍ୟାତୀତ ।"

ସ୍ୱାଭିମାନ ଓ ବିନମ୍ରତାର କି ସୁନ୍ଦର ସମାହାର !

ସେ ଯାହାହେଉ, ଗଣିତ ଜଗତରେ ତାଙ୍କର ସଠିକ୍ ସ୍ଥାନ ନିରୂପଣ ଗଣିତରେ ଐତିହାସିକମାନଙ୍କ ଉପରେ ଛାଡିଦେବା ଉଚିତ୍ ହେବ (ଯଦିଓ ତାହା ମଧ ଏକ ଅସମ୍ଭବ ବ୍ୟାପାର ହୋଇପାରେ ଯେହେତୁ ତାଙ୍କର ଅନେକ ଗୁଡିଏ ଶ୍ରେଷ୍ଠ ଗବେଷଣା କୃତି ମିଳିତ ଗବେଷଣାର ଫଳ) । ଗୋଟିଏ ଦୃଷ୍ଟିରୁ ସେ ନିଶ୍ଚିତ ଭାବରେ ଆଇନଷ୍ଟାଇନ୍, ରଦରଫୋର୍ଡ଼ ବା ସେହି ଶ୍ରେଣୀୟ ଅନ୍ୟ ଜିନିୟସମାନଙ୍କ ଠାରୁ ଉଚ୍ଚତର ସ୍ଥାନର ଅଧିକାରୀ । ସେଇଟି ହେଲା ଯେ କୌଣସି ବୌଦ୍ଧିକ ସୃଷ୍ଟିକୁ, ଛୋଟ ହେଉ ବା ବଡ଼, ଏପରିକି ସାଧାରଣ ଖେଳକୌତୁକକୁ ଏକ କଳାତ୍ମକ କୃତିର ରୂପଦେବାର ଦକ୍ଷତା । ମୋର ମନେହୁଏ ତାଙ୍କର ଏହି ପ୍ରତିଭା ହିଁ ତାଙ୍କୁ ତାଙ୍କ ଅଜାଣତରେ ପ୍ରଚୁର ବୌଦ୍ଧିକ ଆନନ୍ଦ ଦେବାରେ ସହାୟକ ହେଉଥିଲା । ଯେତେବେଳେ "ଜଣେ ଗଣିତଜ୍ଞର ଆତ୍ମଚିନ୍ତନ" ବହିଟି ପ୍ରଥମେ ପ୍ରକାଶିତ ହେଲା ସେତେବେଳେ ଗ୍ରାହାମ ଗ୍ରୀନ୍ ତାଙ୍କ ପୁସ୍ତକ ସମୀକ୍ଷାରେ ଲେଖିଥିଲେ ଯେ ଜଣେ

ସୃଜନଶିଳ୍ପୀର ଚିନ୍ତା ଓ ଚେତନାର ମୃଣ୍ମୟ ବର୍ଣ୍ଣନ ଭାବେ ସେ ପୁସ୍ତକଟି ହେନରି ଜେମ୍‌ସଙ୍କ ନୋଟ୍‌ବୁକ୍ ପରି ଶ୍ରେଷ୍ଠ ସ୍ଥାନୀୟ । ତାଙ୍କ ଘରିପଟ ସମସାମୟିକ ଲୋକମାନଙ୍କ ଉପରେ ହାର୍ଡିଙ୍କ ପ୍ରଭୂତ ପ୍ରଭାବକୁ ବିଚାର କଲାବେଳେ, ଏହାକୁ ହିଁ ରହସ୍ୟ ଉନ୍ମୋଚନକାରୀ ସୂତ୍ର ଭାବରେ ନେଇ ସବୁକିଛି ବୁଝିହୁଏ ।

ସେ ୧୮୭୭ ମସିହାରେ ଗୋଟିଏ ମଧ୍ୟବିତ୍ତ କର୍ମଜୀବୀ ପରିବାରରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ବାପା କ୍ରାନଲେ ନାମକ ପବ୍ଲିକ୍ ସ୍କୁଲରେ ଚିତ୍ରକଳା ଶିକ୍ଷକ ଥିଲେ । ସ୍କୁଲର କୋଷାଧ୍ୟକ୍ଷ ମଧ୍ୟ ଥିଲେ । ମା' ଥିଲେ ଶିକ୍ଷକମାନଙ୍କ ତାଲିମ ପାଇଁ ଉଦ୍ଦିଷ୍ଟ ଲିଙ୍କନ ଟ୍ରେନିଂ କଲେଜରେ ବରିଷ୍ଠ ଶିକ୍ଷୟତ୍ରୀ । ଉଭୟ ପ୍ରତିଭା ସମ୍ପନ୍ନ ଓ ଗଣିତ ପ୍ରେମୀ ଥିଲେ । ତେଣୁ ଅଧିକାଂଶ ଗଣିତଜ୍ଞମାନଙ୍କ ପରି ହାର୍ଡିଙ୍କ କ୍ଷେତ୍ରରେ ଗାଣିତିକ ପ୍ରତିଭାର ବଂଶପରମ୍ପରା ଖୋଜିବା ପାଇଁ ବିଶେଷ କଷ୍ଟ କରିବାକୁ ପଡେ ନାହିଁ । ତେଣୁ ଜଣେ ଭାବୀ ଗଣିତଜ୍ଞ ଭାବରେ ହିଁ ତାଙ୍କ ବାଲ୍ୟକାଳ କଟିଥିଲା ଯାହାକି ଆଇନଷ୍ଟାଇନଙ୍କ କ୍ଷେତ୍ରରେ ମଧ୍ୟ ଦେଖିବାକୁ ମିଳେନାହିଁ । ତୁଳସୀ ଦୁଇପତ୍ରରୁ ବାସିଲାଭଳି ସେ କଥା କହି ଶିଖିବା ବେଳକୁ ମଧ୍ୟ ତାଙ୍କ ଅସାଧାରଣ ଧୀଶକ୍ତିର ସୂଚନା ମିଳୁଥିଲା । ଦୁଇବର୍ଷ ହେଲାବେଳକୁ ସେ ଏକ ନିୟୁତ ପର୍ଯ୍ୟନ୍ତ ସଂଖ୍ୟା ଲେଖିପାରୁଥିଲେ (ଗାଣିତିକ ପ୍ରତିଭାର ଏହା ଏକ ଜଣାଶୁଣା ଲକ୍ଷଣ) । ସେ ଯେତେବେଳେ ଚର୍ଚ୍ଚ ଯାଉଥିଲେ ସେତେବେଳେ ବାଇବେଲ ସ୍ତୋତ୍ର ଗୁଡ଼ିକର ସୂଚକ ସଂଖ୍ୟା ଓ ସେଗୁଡ଼ିକର ଉତ୍ପାଦକ ଇତ୍ୟାଦିକୁ ନେଇ ଖେଳରେ ମଜି ଯାଉଥିଲେ । ସେହି ସମୟରୁ ହିଁ ସେ ସଂଖ୍ୟାମାନଙ୍କ ସହ ଖେଳିବାରେ ଲାଗି ରହିଲେ । ସଂଖ୍ୟାଗୁଡ଼ିକୁ ନେଇ ରାମାନୁଜନଙ୍କ ରୋଗଶଯ୍ୟା ପାଖରେ ଯେଉଁ ମର୍ମସ୍ପର୍ଶୀ ଦୃଶ୍ୟଟି ଅଭିନୀତ ହୋଇଥିଲା ତାହା ସମସ୍ତଙ୍କୁ ଜଣା । ତଥାପିବି ପରେ ମୁଁ ସେହିଟିକୁ ପୁନରାବୃତ୍ତି କରିବି ।

ହାର୍ଡ଼ିଙ୍କ ବାଲ୍ୟକାଳ ଆଧାରିତ ଥିଲା ଜ୍ଞାନବର୍ଦ୍ଧକ, ସୁସଂସ୍କୃତ ଓ ଉଚ୍ଚ ଶୈକ୍ଷିକ ଭିକ୍ଟୋରିଆନ ମୂଲ୍ୟବୋଧ ଉପରେ । ତାଙ୍କ ପ୍ରତି ତାଙ୍କ ବାପା ମା'ଙ୍କର ହୁଏତ ଥିଲା ଗଭୀର ମମତା କିନ୍ତୁ ସେମାନେ ବିଚାରବନ୍ତ ମଧ୍ୟ ଥିଲେ । ଏଭଳି ଏକ ଭିକ୍ଟୋରିଆନ ପରିବାରରେ ବାଲ୍ୟକାଳ ଯେତେ କୋମଳ ଓ ସୁଖପ୍ରଦ ହୋଇପାରେ ହୋଇଥିଲା କିନ୍ତୁ ଶୈକ୍ଷିକ ଦୃଷ୍ଟି କୋଣରୁ ଥିଲା ହୁଏତ ଟିକିଏ ଅଧିକ ଶୃଙ୍ଖଳିତ । ତାଙ୍କ କ୍ଷେତ୍ରରେ ଦୁଇଟି ଅସାଧାରଣ କଥା ଦେଖିବାକୁ ମିଳିଥିଲା । ପ୍ରଥମତଃ ଖୁବ୍ କମ୍ ବୟସରୁ ସେ ଅତ୍ୟନ୍ତ ଆତ୍ମ-ସଚେତନ ଥିଲେ । ବାରବର୍ଷ ହେବାର ବହୁ ପୂର୍ବରୁ ତାଙ୍କ ବାପା ମା'

ଜାଣିଥିଲେ ଯେ ସେ ଅସାଧାରଣ ପ୍ରତିଭା ସମ୍ପନ୍ନ । ସେ ନିଜେ ମଧ୍ୟ, ଶ୍ରେଣୀରେ ପ୍ରତ୍ୟେକ ବିଷୟରେ ପ୍ରଥମ ହେଉଥିଲେ । ଶ୍ରେଣୀରେ ପ୍ରଥମ ହେଉଥିବାରୁ ସ୍କୁଲର ସବୁ ପିଲାଙ୍କ ଆଗରେ ଯାଇ ପୁରସ୍କାର ଗ୍ରହଣ କରିବାକୁ ପଡୁଥିଲା । ଏହା ତାଙ୍କୁ ଦୁର୍ବିସହ ବୋଧ ହେଉଥିଲା । ସେ ମତେ ଥରେ ରାତିରେ ଖାଇବାବେଳେ କହିଥିଲେ ଯେ ଏହି ଯନ୍ତ୍ରଣାରୁ ମୁକ୍ତି ପାଇବା ପାଇଁ ସେ ଜାଣିଶୁଣି କେତେକ ପ୍ରଶ୍ନର ଉତ୍ତର ଭୁଲ ଲେଖୁଥିଲେ । କିନ୍ତୁ ଠକାଠକି କାମରେ କୁଶଳୀ ନଥିବାରୁ ସେ ଯାହା କଲେ ବି ପରୀକ୍ଷାରେ ପ୍ରଥମ ହେଉଥିଲେ ଓ ପୁରସ୍କାର ପାଉଥିଲେ ।

ସମୟକ୍ରମେ ତାଙ୍କର ଆତ୍ମସଚେତନତା କିଛି କମିଗଲା । ସେ ପ୍ରତିଯୋଗୀ ମନୋଭାବ ସମ୍ପନ୍ନ ହେଲେ । ସେ ନିଜେ "ଜଣେ ଗଣିତଜ୍ଞଙ୍କର ଆତ୍ମଚିନ୍ତନ"ରେ କହିଛନ୍ତି, "ମୁଁ ପିଲାଦିନେ ଗଣିତପ୍ରେମରେ ପଡିବାର ମନେ ନାହିଁ । ଯଦିବା ଗଣିତଜ୍ଞ ବୃତ୍ତି ବିଷୟରେ ମୋ' ମନରେ କିଛି ଧାରଣା ଥିଲା ମୁଁ କୌଣସି ଉଚ୍ଚାଦର୍ଶ ଦ୍ୱାରା ଅନୁପ୍ରାଣିତ ହୋଇନଥିଲି । ମୁଁ ଗଣିତ କହିଲେ କେବଳ ପରୀକ୍ଷା ଓ ମେଧାବୃତ୍ତିକୁ ହିଁ ବୁଝୁଥିଲି । ମୁଁ ଅନ୍ୟ ପିଲାମାନଙ୍କୁ ହରାଇବାକୁ ଚାହୁଁଥିଲି । ସେହିବାଟରେ ହିଁ ମୁଁ ନିଜକୁ ପ୍ରତିପାଦିତ କରିପାରିବି ବୋଲି ଭାବୁଥିଲି ।" ଯାହା ହେଲେ ବି ସେ ନିଜର ଅତ୍ୟନ୍ତ ସ୍ପର୍ଶକାତର ସୂକ୍ଷ୍ମାନୁଭବୀ ଗୁଣକୁ ନେଇ ବଞ୍ଚିବାକୁ ବାଧ୍ୟଥିଲେ । ସତେ ଯେପରି ବାହ୍ୟ ଦୁନିଆରୁ ତାଙ୍କ ଅନ୍ତରକୁ ଲୁଚାଇ ରଖିବାରେ ସ୍ରଷ୍ଟା ଚରମ ଅବହେଳା ପ୍ରଦର୍ଶନ କରିଥିଲେ । ଆଇନଷ୍ଟାଇନ ବାହ୍ୟଜଗତର ଅଧ୍ୟୟନରେ ମଗ୍ନ ରହି ନିଜର ପ୍ରବଳ ଅହଂଭାବକୁ କବଳିତ କରି ନୈତିକ ପ୍ରତିଷ୍ଠା ଲାଭ କରିଥିଲେ । କିନ୍ତୁ ହାର୍ଡିଙ୍କ କ୍ଷେତ୍ରରେ ନିଜର ଦୁର୍ବଳ ଅସୁରକ୍ଷିତ ଅହଂଭାବକୁ ଦୃଢ଼ିଭୂତ କରିବାର ଆବଶ୍ୟକତା ଥିଲା । ଏଥିଲାଗି ଜୀବନର ବିଭିନ୍ନ ସମୟରେ ନିଜର ନୈତିକ ମତ ଜାହିର କରିବା ଅବସରରେ ସେ ବେଳେବେଳେ ଅତିମାତ୍ରାରେ ସ୍ୱପକ୍ଷବାଦୀ ହୋଇଯାଉଥିଲେ (ଯାହାକି ଆଇନଷ୍ଟାଇନଙ୍କ କ୍ଷେତ୍ରରେ କେବେ ଘଟିନାହିଁ) । ଅନ୍ୟପକ୍ଷରେ ଏହାହିଁ ତାଙ୍କୁ ଏପରି ଆତ୍ମସମୀକ୍ଷାମୂଳକ ଅନ୍ତର୍ଦୃଷ୍ଟି ଓ ସୌନ୍ଦର୍ଯ୍ୟଭରା ସ୍ପଷ୍ଟବାଦିତା ପ୍ରଦାନ କରୁଥିଲା ଯାହା ବଳରେ ସେ ନିଜ ବିଷୟରେ ଅତୁଳନୀୟ ସରଳତାର ସହ କହିପାରୁଥିଲେ (ଯାହା ଆଇନଷ୍ଟାଇନଙ୍କ ପକ୍ଷରେ ସମ୍ଭବ ନଥିଲା) ।

ମୋର ବିଶ୍ୱାସ ତାଙ୍କ ସ୍ୱଭାବରେ ଥିବା ଏହି ବିରୋଧାଭାସ ତାଙ୍କର ବିଚିତ୍ର ହାବଭାବ ସହ ସମ୍ପର୍କିତ । ସେ ଥିଲେ ପ୍ରଚଣ୍ଡ ଆତ୍ମପ୍ରୀତି ବିରୋଧୀ । ନିଜର ଫଟୋ

ଉଠାଇବାକୁ ମଧ୍ୟ ସେ କେବେ ଚାହୁଁନଥିଲେ । ମୋ' ଜାଣତରେ ତାଙ୍କର କେବଳ ମାତ୍ର ପାଞ୍ଚଟି ଫଟ ଅଛି । ତାଙ୍କ ରୁମରେ ସେ କୌଣସି ଦର୍ପଣ ରଖୁନଥିଲେ । ଖିଅରହେବା ଦର୍ପଣଟିଏ ମଧ୍ୟ ନୁହେଁ । କୌଣସି ହୋଟେଲକୁ ଗଲେ ତାଙ୍କର ପ୍ରଥମ କାମ ଥିଲା ସବୁ ଦର୍ପଣଗୁଡ଼ିକୁ ଘୋଡାଇବା । ଜଣେ କଦାକାର ମଣିଷ ପାଖରେ ବି ଏପରି ବ୍ୟବହାର ବିଚିତ୍ରବୋଧ ହୋଇଥାଆନ୍ତା । ତେଣୁ ହାର୍ଡିଙ୍କ କ୍ଷେତ୍ରରେ ଏଭଳି ବ୍ୟବହାର ଥିଲା ଅତି ବିଚିତ୍ର । କାରଣ ତାଙ୍କର ଚେହେରା ଥିଲା ଖୁବ୍ ସୁନ୍ଦର; ବେଶ୍ ଅସାଧାରଣ । ଅବଶ୍ୟ ବାହାର ଲୋକଟି ଦେଖୁଥିବା ଚେହେରା ସହିତ ଆତ୍ମପ୍ରୀତି ବା ଆତ୍ମଗ୍ଲାନୀର କୌଣସି ସମ୍ପର୍କ ନଥାଏ ।

ତାଙ୍କ ବ୍ୟବହାର ମଧ୍ୟ ଖୁବ୍ ବିଚିତ୍ର । ସେ ଦୃଷ୍ଟିରୁ ସେ ଓ ଆଇନଷ୍ଟାଇନ ପୁରା ଅଲଗା । ଇନ୍‌ଫେଲ୍‌ଡଙ୍କ ଭଳି ଆଇନଷ୍ଟାଇନଙ୍କ ସହ ବହୁ ସମୟ କଟାଇଥିବା ଲୋକମାନଙ୍କ ଅନୁଭୂତି ହେଲା ଯେ ମିଳାମିଶା ବଢ଼ିବା ସହ ଆଇନଷ୍ଟାଇନ ଅଧିକ ରହସ୍ୟମୟ ଲାଗନ୍ତି । ହାର୍ଡିଙ୍କ କ୍ଷେତ୍ରରେ ଠିକ୍ ଓଲଟା । ତାଙ୍କ ବ୍ୟବହାର ଆମମାନଙ୍କ ବ୍ୟବହାର ଠାରୁ ନିଶ୍ଚୟ ଭିନ୍ନ - ବେଳେବେଳେ ତ ଅଦ୍ଭୁତ । କିନ୍ତୁ ସମ୍ପର୍କ ବଢ଼ିବା ସହ ପରିଷ୍କାର ଭାବରେ ଜଣାପଡେ ଯେ ତାଙ୍କର ସ୍ୱଭାବ ଉପରେ ଆଉଗୋଟିଏ ପ୍ରଭାବଶାଳୀ ସ୍ୱଭାବ ଯେପରି ରାଜତ୍ୱ କରୁଛି । ନିମ୍ନସ୍ଥ ସ୍ୱଭାବ ଆମମାନଙ୍କ ଠାରୁ ବିଶେଷ ତଫାତ୍ ନୁହେଁ । ବରଂ ଆମ ତୁଳନାରେ ଅଧିକ କୋମଳ, ଅନାବୃତ ଓ ସୂକ୍ଷ୍ମସ୍ନାୟୁଯୁକ୍ତ ।

ତାଙ୍କ ବାଲ୍ୟକାଳର ଦ୍ୱିତୀୟ ବୈଶିଷ୍ଟ୍ୟ ଥିଲା ଦୈନନ୍ଦିନ ଜୀବନକୁ ନେଇ କିଛି ଆଶା । ଆଶାଟି ହେଲା ଯେ ଜୀବନସାରା ତାଙ୍କୁ ଯେପରି କୌଣସି ବାଧାବିଘ୍ନ ବା ବିପଦ ଆପଦର ସମ୍ମୁଖୀନ ହେବାକୁ ନପଡେ । ଶୁଦ୍ଧ ସାଧୁ ସ୍ୱଭାବର ହାର୍ଡି କିନ୍ତୁ ଏଭଳି କଥାକୁ ନେଇ ଅହେତୁକ ଚିନ୍ତା କରିବା ଲୋକ ନଥିଲେ । ସେ ଭଲଭାବରେ ଜାଣିଥିଲେ ସୁବିଧାସୁଯୋଗର ଅର୍ଥ କ'ଣ ଓ ସେ ସବୁ ଭାଗ୍ୟ ତାଙ୍କୁ ଦେଇଛି । ଜଣେ ସ୍କୁଲଶିକ୍ଷକ ପରିବାରରେ ଜନ୍ମ ନେଇଥିବାରୁ ତାଙ୍କ ପାଖରେ ଧନ ସମ୍ପତ୍ତି ନଥିଲା ସତ କିନ୍ତୁ ଊନବିଂଶ ଶତାବ୍ଦୀର ଶେଷ ଭାଗର ଇଂଲଣ୍ଡରେ ସର୍ବୋତ୍ତମ ଶିକ୍ଷାର ସୁଯୋଗ ତାଙ୍କୁ ମିଳିଥିଲା । ସେ ଦେଶରେ ଏହାକୁ ଅମାପ ଧନସମ୍ପତ୍ତି ଠାରୁ ଅଧିକ ମହତ୍ତ୍ୱ ଦିଆଯାଉଥିଲା । ଏମିତି ଦେଖିଲେ ଅନେକ ପ୍ରକାର ମେଧାବୃତ୍ତିର ବ୍ୟବସ୍ଥା ତ ଅବଶ୍ୟ ଥିଲା, କିନ୍ତୁ ସେ ସବୁ ପାଇବାର ବାଟ କ'ଣ ଜାଣିବା ତ ଦରକାର । ତାଙ୍କୁ

ମିଳୁଥିବା ପରିବେଶରେ ଯୁବକ ହାର୍ଡି ସାଧାରଣ ଲୋକଙ୍କ ଭିତରେ ହଜିଯିବାର ପ୍ରଶ୍ନ ଉଠୁନଥିଲା ଯଦିଓ ଯୁବକ ଓ୍ୱେଲସ ବା ଯୁବକ ଆଇନଷ୍ଟାଇନଙ୍କ କ୍ଷେତ୍ରରେ ତାହା ଘଟିବାର ଯଥେଷ୍ଟ ସମ୍ଭାବନା ଥିଲା । କହିବାକୁ ଗଲେ ବାରବର୍ଷ ପର ଠାରୁ ତାଙ୍କର କେବଳ ବଞ୍ଚି ରହିବାହିଁ ଦରକାର ଥିଲା । ତାଙ୍କ ପ୍ରତିଭା ବିକାଶର ରାସ୍ତା ନିଷ୍କଣ୍ଟକ ଥିଲା ।

ତାଙ୍କୁ ଯେତେବେଳେ ବାରବର୍ଷ ସେ ଓ୍ୱିଞ୍ଚେଷ୍ଟର ସ୍କୁଲରେ ଗୋଟିଏ ମେଧାବୃତ୍ତି ପାଇଲେ । ସେତେବେଳେ ଓ ପରବର୍ତ୍ତୀ କିଛି ବର୍ଷ ପାଇଁ ଗଣିତ ଶିକ୍ଷା ପାଇଁ ଏହି ସ୍କୁଲ ପୁରା ଇଂଲଣ୍ଡରେ ସର୍ବୋତ୍ତମ ସ୍କୁଲ ଭାବରେ ପରିଚିତ ଥିଲା । କ୍ରାନଲେରେ ଅବସ୍ଥାନ ବେଳେ ହାର୍ଡିଙ୍କ କିଛି ଗଣିତ ଗବେଷଣା ଆଧାରରେ ତାଙ୍କୁ ଏହି ମେଧାବୃତ୍ତିଟି ମିଳିଥିଲା । (ଆଜି ହୁଏତ କୌଣସି ନାମୀଦାମୀ ସ୍କୁଲ ମେଧାବୃତ୍ତି ଦେବାରେ ଏପରି କୋହଳ ମନୋଭାବ ଦେଖାଇବ କି ନାହିଁ ସନ୍ଦେହ) । ସେଠାରେ ଗଣିତ କ୍ଲାସ୍‌ରେ ସେ ଥିଲେ ଏକମାତ୍ର ଛାତ୍ର । ପ୍ରାଚୀନ ସାହିତ୍ୟରେ ମଧ୍ଯ ସେ କଲେଜର ସବୁଠାରୁ ଭଲ ପିଲାମାନଙ୍କ ସମକକ୍ଷ ଥିଲେ । ପରବର୍ତ୍ତୀ ସମୟରେ ସେ ସ୍ୱୀକାର କରିଥିଲେ ଯେ ତାଙ୍କୁ ଖୁବ୍ ଭଲ ଶିକ୍ଷା ମିଳିଥିଲା । କିନ୍ତୁ ଏତକ ସେ ଖୁବ୍ କୁଣ୍ଠାର ସହ ସ୍ୱୀକାର କରିଥିଲେ । କାରଣ କେବଳ ଶ୍ରେଣୀ ଗୃହର ପଢ଼ାପଢ଼ି ଛଡା ବାକି କଥାରେ ସେ ସ୍କୁଲକୁ ଭଲ ପାଉନଥିଲେ । ସବୁ ଭିକ୍ଟୋରିଆନ ସ୍କୁଲ ଗୁଡିକ ପରି ଓ୍ୱିଞ୍ଚେଷ୍ଟର ମଧ୍ଯ ଗୋଟିଏ କଠୋର ଶୃଙ୍ଖଳାର ସ୍ଥାନ ଥିଲା । ଏପରିକି ଥରେ ଶୀତଦିନେ ସେ ମର-ନମର ଅବସ୍ଥାକୁ ଆସି ଯାଇଥିଲେ । ଘରର କୋମଳ ପରିବେଶରେ ରହି ସେଣ୍ଟ ପଲ୍ସ ସ୍କୁଲରେ ଦିବାଧାୟୀ ଛାତ୍ର ଭାବରେ ପଢୁଥିବା ଲିଟଲ୍‌ଉଡ୍ ବା ସରକାରୀ ସ୍କୁଲ ଗୁଡିକର ସହଜ ସରଳ ପରିବେଶରେ ପଢୁଥିବା ତାଙ୍କ ସାଙ୍ଗମାନଙ୍କୁ ସେ ଖୁବ୍ ଈର୍ଷା କରୁଥିଲେ । ସେଇଥିପାଇଁ ଓ୍ୱିଞ୍ଚେଷ୍ଟର ଛାଡିବା ପରେ ଥରେ ହେଲେ ସେ ସେଠାକୁ ଯାଇନାହାନ୍ତି । କିନ୍ତୁ ଓ୍ୱିଞ୍ଚେଷ୍ଟର ଛାଡିଲାବେଳକୁ ସେ ଜୀବନର ଏକ ସମ୍ପୂର୍ଣ୍ଣ ନିର୍ଦ୍ଦିଷ୍ଟ ଓ ସୁରକ୍ଷିତ ରାସ୍ତା ଉପରେ ପହଞ୍ଚି ସାରିଥିଲେ । ତାଙ୍କୁ କେମ୍ବ୍ରିଜ ବିଶ୍ୱବିଦ୍ୟାଳୟର ଟ୍ରିନିଟି କଲେଜରେ ଉଚ୍ଚତର ଅଧ୍ୟୟନ ପାଇଁ ଏକ ମୁକ୍ତ ମେଧାବୃତ୍ତିଟିଏ ମିଳି ସାରିଥିଲା ।

ଓ୍ୱିଞ୍ଚେଷ୍ଟର ବିରୁଦ୍ଧରେ ତାଙ୍କର ଏକ ବିଚିତ୍ର ଅଭିଯୋଗ ଥିଲା । କଥାଟି ଏହିପରି । ଯେକୌଣସି ବଲ୍ ଖେଳରେ ତାଙ୍କର ଏକ ପ୍ରକୃତିଦତ୍ତ ନୈପୁଣ୍ୟ ଥିଲା । ତାଙ୍କର ଦୃଷ୍ଟିଶକ୍ତି ଥିଲା ଖୁବ୍ ତୀକ୍ଷ୍ଣ । ପଚାଶବର୍ଷ ବୟସରେ ମଧ୍ଯ ସେ ବିଶ୍ୱବିଦ୍ୟାଳୟର ଦ୍ୱିତୀୟସ୍ତର ଟେନିସ ଖେଳାଳୀମାନଙ୍କୁ ସହଜରେ ହରାଇଦେଉଥିଲେ । ଷାଠିଏ ବର୍ଷରେ

ମଧ ତାଙ୍କୁ କ୍ରିକେଟ ନେଟ୍‌ରେ ଚମତ୍କାର ସଟ୍ ଖେଳିବାର ମୁଁ ଦେଖିଛି । କିନ୍ତୁ ଓ୍ୱିଞ୍ଚେଷ୍ଟରରେ ତାଙ୍କୁ ଘଣ୍ଟାଟିଏ ପାଇଁ ବି କୌଣସି ଖେଳ ପ୍ରଶିକ୍ଷଣ ମିଳି ନଥିଲା । ଫଳସ୍ୱରୂପ ତାଙ୍କ ଖେଳର ପଦ୍ଧତି ଦୋଷଯୁକ୍ତ ଥିଲା । ସାମାନ୍ୟ ପ୍ରଶିକ୍ଷଣରେ ସେ ଖୁବ୍ ଭଲ ବ୍ୟାଟସମ୍ୟାନ ହୋଇପାରିଥାଆନ୍ତେ ବୋଲି ସେ ଭାବୁଥିଲେ । ପୁରାପୁରି ପ୍ରଥମ ଶ୍ରେଣୀୟ ନହେଲେ ମଧ ଖୁବ୍ ପାଖାପାଖି । ନିଜ ବିଷୟରେ ତାଙ୍କର ଅନ୍ୟ ସମସ୍ତ ଆକଳନ ଭଳି ଏହି ଆକଳନଟି ମଧ ସଠିକ୍ ଥିଲା ବୋଲି ମୋର ବିଶ୍ୱାସ । ଆଶ୍ଚର୍ଯ୍ୟର କଥା ଯେ ଭିକ୍ଟୋରିଆ ଯୁଗର ଖେଳ-ପାଗଳ ସମୟର ଶୀର୍ଷବିନ୍ଦୁରେ ଏଭଳି ଏକ ପ୍ରତିଭା ଲୁଚି ରହିଗଲା । ମୋର ବିଶ୍ୱାସ ଯେ ବିଦ୍ୟାଳୟର ସର୍ବୋତ୍ତମ ମେଧାବୀ ଛାତ୍ର, ଦୁର୍ବଳ ରୋଗୀଣା ଶରୀର ଓ ଅତ୍ୟନ୍ତ ଲଜ୍ଜାଶୀଳ ପିଲାଟି ପାଖରେ ଖେଳପ୍ରତିଭା ଖୋଜିବାର ଇଚ୍ଛା କାହାରି ମନକୁ ଭୁଲରେ ସୁଦ୍ଧା ସ୍ପର୍ଶ ମଧ କରିନଥିବ ।

ତାଙ୍କ ଭଳି ଜଣେ ବିଚକ୍ଷଣ ବ୍ୟକ୍ତି ପକ୍ଷରେ ଅକ୍ସଫୋର୍ଡର ନିଉ କଲେଜ ଯିବା ହୁଏତ ସ୍ୱାଭାବିକ ଥିଲା । ସେଥିରେ ମଧ ତାଙ୍କ ବୃତ୍ତିଗତ ଜୀବନ ଉପରେ ବିଶେଷ କୁପ୍ରଭାବ ପଡି ନଥାନ୍ତା । (ସେ ଅକ୍ସଫୋର୍ଡକୁ ସବୁବେଳେ କେମ୍ବ୍ରିଜ ଠାରୁ ଅଧିକ ପସନ୍ଦ କରୁଥିଲେ ଓ ହୁଏତ ଜୀବନସାରା ସେଠାରେ ରହିଯାଇଥାଆନ୍ତେ । ତା' ହୋଇଥିଲେ ଆମେ କେତେ ଜଣ କିନ୍ତୁ କେତେକେତେ ଚମତ୍କାର ଅନୁଭୁତିରୁ ବଞ୍ଚିତ ହୋଇଥାଆନ୍ତୁ ।) ତାଙ୍କର କେମ୍ବ୍ରିଜ ଟ୍ରିନିଟିରେ ଯୋଗଦେବା ମୂଳରେ ଥିବା ନିଛକ ସତ କଥାଟିକୁ ସେ ନିଜର ଚିରାଚରିତ କୌତୁକିଆ ଢ଼ଙ୍ଗରେ "ଆତ୍ମଚିନ୍ତନ" ବହିରେ ଏହିଭଳି ପ୍ରକାଶ କରିଛନ୍ତି । "ମତେ ପନ୍ଦର ବର୍ଷ ପାଖାପାଖି ହୋଇଥିବାବେଳେ ମୋ' ଜୀବନର ଅଭିଳାଷ ହଠାତ୍ ତା'ର ମୋଡ ବଦଳାଇଲା ଅଦ୍ଭୁତ ଭାବରେ କେମ୍ବ୍ରିଜ କଲେଜ ଜୀବନ ଉପରେ ଲିଖିତ ଗୋଟିଏ ସିରିଜ ମଧରେ "ଆଲାନ ସେଣ୍ଟ ଅବାଇନ" (ପ୍ରକୃତ ନାଁ ମିସେସ୍ ଫ୍ରାନସେସ୍ ମାର୍ଶାଲ)ଙ୍କ ଲିଖିତ "ଏ ଫେଲୋ ଅଫ୍ ଟ୍ରିନିଟି" ନାଁରେ ବହିଖଣ୍ଡେ ଅଛି । ସେ ବହିରେ ଦୁଇଟି ମୁଖ୍ୟ ଚରିତ୍ର । ପ୍ରଥମର ନାଁ ଫ୍ଲାଓ୍ୱାରସ୍ । ସେ ସର୍ବଗୁଣ ସମ୍ପନ୍ନ । ଦ୍ୱିତୀୟ ଓ ଗୌଣ ଚରିତ୍ରର ନାଁ ବ୍ରାଉନ୍ । ପ୍ରଥମ ତୁଳନାରେ ସେ ଖୁବ୍ ଦୁର୍ବଳ । ଫ୍ଲାଓ୍ୱାରସ୍ ଓ ବ୍ରାଉନ୍ ବିଶ୍ୱବିଦ୍ୟାଳୟ ଜୀବନରେ ବହୁତ ବିପଦର ସମ୍ମୁଖୀନ ହୁଅନ୍ତି । ଫ୍ଲାଓ୍ୱାରସ ଏସବୁ ବିପଦକୁ ଅତିକ୍ରମ କରି ସେକେଣ୍ଡ ରାଙ୍ଗଲର୍ (wrangler) ସିନିୟର କ୍ଲାସିକ ପଦପାଇ ଅନାୟାସରେ ଗବେଷଣା ବୃତ୍ତି ପାଇବାରେ ସଫଳ ହୁଏ । ବ୍ରାଉନ କିନ୍ତୁ ଖାଲରେ ପଡିଯାଏ ।

ବାପା ମା'ଙ୍କୁ ସର୍ବସ୍ୱାନ୍ତ କରେ । ମଦୁଆ ପାଲଟିଯାଏ । ଶେଷରେ ସେ ଧର୍ମ ପ୍ରଚାରକ ହୁଏ । ଏତେ ପ୍ରକାର ଦୁଃଖଦ ପରିସ୍ଥିତି ଭିତରେ ମଧ୍ୟ ଦୁହିଁଙ୍କ ମଧ୍ୟରେ ଥିବା ବନ୍ଧୁତ୍ୱ ଅତୁଟ ରହିଥାଏ । ଫ୍ଲାଓ୍ୱାରସ ଯେଉଁଦିନ ପ୍ରଥମ ଥର ପାଇଁ ସିନିୟର କମ୍ବିନେସନ କକ୍ଷରେ ବସି ମଧୁର ଓ୍ୱାଇନ୍ ଢ଼ୋକେ ପିଇ ବାଦାମ ଗୋଟେଗୋଟେ ପାଟିରେ ପକାଉଥାଏ ସେତେବେଳେ ମଧ୍ୟ ସେ ଶ୍ରଦ୍ଧାର ସହ ବ୍ରାଉନ କଥା ହିଁ ଭାବୁଥାଏ ।

ଫ୍ଲାଓ୍ୱାରସ ଜଣେ ମର୍ଯ୍ୟାଦା ସମ୍ପନ୍ନ ବ୍ୟକ୍ତି ହୋଇପାରନ୍ତି (ଅନ୍ତତଃ ଯେତେଦୂର ଯାଏ "ଆଲାନ ସେଣ୍ଟ ଅବାଇନ" ଚିତ୍ରଣ କରିଛନ୍ତି) କିନ୍ତୁ ମୋର ସ୍ୱଚ୍ଛ ଧୀଶକ୍ତି ମଧ୍ୟ ମାନିବାକୁ ପ୍ରସ୍ତୁତ ନୁହେଁ ଯେ ସେ ଜଣେ ଉଚ୍ଚସ୍ତରର ବୁଦ୍ଧିମାନ ଲୋକ । ତେଣୁ ମନକୁମନ ଭାବିଲି ଯେ, "ଅନ୍ୟମାନେ ଯାହା କରିପାରିଲେ ମୁଁ କାହିଁକି କରି ପାରିବି ନାହିଁ ? ବିଶେଷ କରି କମ୍ବିନେସନ ରୁମ୍‌ର ଶେଷ ଦୃଶ୍ୟ ମତେ ସମ୍ପୂର୍ଣ୍ଣ ଭାବରେ ଅଭିଭୂତ କଲା । ସେହି ସମୟ ଠାରୁ ମୁଁ ନିଜେ ସେଭଳି ଏକ ଅନୁଭୂତି ହାସଲ କରିବା ପର୍ଯ୍ୟନ୍ତ ଗଣିତ ଅର୍ଥ କେବଳ ଟ୍ରିନିଟିରେ ଗବେଷଣା ବୃତ୍ତି ପାଇବା ବୋଲି ଧରି ନେଲି ।"

ଯଥା ସମୟରେ ମାଥମେଟିକ୍ସ ଟ୍ରାଇପସ୍ ଦ୍ୱିତୀୟ ଭାଗରେ ସର୍ବୋଚ୍ଚ ସ୍ଥାନ ହାସଲ କରି ସେତକ ମଧ୍ୟ ସେ ପାଇବାରେ ସକ୍ଷମ ହେଲେ । ସେତେବେଳକୁ ତାଙ୍କର ବୟସ ବାଇଶ ବର୍ଷ । କିନ୍ତୁ ସେହି ସମୟ ମଧ୍ୟରେ ଦୁଇଟି ଭାଗ୍ୟ ନିର୍ଦ୍ଧାରଣକାରୀ ଘଟଣା ଘଟି ସାରିଥାଏ । ପ୍ରଥମଟି ଧର୍ମ ସମ୍ବନ୍ଧୀୟ; ପୁରାପୁରି ଉଚ୍ଚ ଭିକ୍ଟୋରିଆ ପରମ୍ପରା ବିଜଡ଼ିତ । ମୋର ଧାରଣା ଯେ ଓ୍ୱିଞ୍ଚେଷ୍ଟର ଛାଡ଼ିବା ପୂର୍ବରୁ ହାର୍ଡି ଭଗବାନଙ୍କ ଅସ୍ତିତ୍ୱରେ ବିଶ୍ୱାସ ନ କରିବାର ନିଷ୍ପତ୍ତି ନେଇସାରିଥିଲେ । ଅନ୍ୟ ସମସ୍ତ ଭାବନା ଭଳି ଏକଥା ମଧ୍ୟ ତାଙ୍କ ମନରେ ଅତ୍ୟନ୍ତ ସ୍ପଷ୍ଟ ଥିଲା; ଧଳା ଓ କଳା ଭଳି । କିନ୍ତୁ ଗୀର୍ଜାଘରେ ଠାକୁର ଉପାସନା ଟ୍ରିନିଟିରେ ବାଧ୍ୟତାମୂଳକ ଥିଲା । ହାର୍ଡି ନିଜର ସ୍ୱାଭାବିକ ଦୃଢ଼ତାର ସହ ଡିନ୍‌କୁ ଜଣାଇ ଦେଲେ ଯେ ସେ ଗୀର୍ଜା ଯାଇ ଉପାସନା କରିପାରିବେ ନାହିଁ । ତାଙ୍କ ବିବେକ ତାଙ୍କୁ ସେଥିପାଇଁ ବାଧା ଦେଉଛି । ଉଚ୍ଚ ପଦବୀର ଆସ୍ପର୍ଦ୍ଧା ସହ ଡିନ୍ ବାଧ୍ୟକଲେ ଯେ ହାର୍ଡି ତାଙ୍କ ବାପା ମା'ଙ୍କୁ ସେ କଥା ଜଣାଇ ଦିଅନ୍ତୁ । ହାର୍ଡିଙ୍କ ବାପା ମା' ଧର୍ମ ପରାୟଣ ଲୋକଥିଲେ । ସେ କଥା ଡିନ୍ ଜାଣିଥିଲେ । ଡିନ୍‌ଙ୍କ ଠାରୁ ହାର୍ଡି ତ ଅଧିକ ଭଲ ଭାବରେ ଜାଣିଥିଲେ ଯେ ତାଙ୍କ ନିଷ୍ପତ୍ତି ବିଷୟ ଶୁଣି ବାପା, ମା' ଗଭୀର ଦୁଃଖ ଅନୁଭବ କରିବେ । ଆଜି ହୁଏତ ସତୁରୀ ବର୍ଷ ପରେ ସେ ବ୍ୟଥା ଆକଳନ କରିବା ସହଜ ନୁହେଁ ।

ହାର୍ଡିଙ୍କ ହୃଦୟ ଓ ବିବେକ ମଧ୍ୟରେ ସଂଘର୍ଷ ବଢ଼ିବାରେ ଲାଗିଲା । ସେ ମଧ୍ୟ ଦୁନିଆର ରୀତିନୀତି ବିଷୟରେ ଏତେ ଅନୁଭବୀ ନଥିଲେ ଯାହାକି ତାଙ୍କୁ ସମସ୍ୟାଟିକୁ ଏଡାଇଯିବାକୁ ବାଟ ଦେଖାଇ ପାରିଥାଆନ୍ତା । ଏପରିକି ସମସ୍ୟାଟିକୁ କିପରି ମୁକାବିଲା କରିବାକୁ ହେବ ସେ ବିଷୟରେ ତାଙ୍କର ଅଧିକ ଅନୁଭବୀ ସାଙ୍ଗ ଜର୍ଜ ଟ୍ରେଭେଲ୍ୟାଁ ବା ଡେସମଣ୍ଡ ମାକାର୍ଥୀଙ୍କ ସହ ପରାମର୍ଶ କରିବାକୁ ମଧ୍ୟ ଭୁଲିଗଲେ । ଏକଥା ସେ ନିଜେ ବହୁବର୍ଷ ପରେ ଫେନ୍ନର ପଡିଆରେ ଗୋଟିଏ ଅପରାହ୍ଣରେ ମତେ କହିଥିଲେ । କଥାଟି ସେ ପର୍ଯ୍ୟନ୍ତ ତାଙ୍କୁ ବ୍ୟଥିତ କରୁଥିଲା ନିଶ୍ଚୟ । ସେ ଯାହା ହେଉ, ଡିନ୍‌ଙ୍କ କହିବା ଅନୁଯାୟୀ ସେ ଚିଠିଟି ଲେଖିଲେ । ଏହି ଘଟଣାଟି ଯୋଗୁ ଧର୍ମ ଉପରେ ତାଙ୍କର କୌଣସି ବିଶ୍ୱାସ ନଥିବା କଥାଟା ସମସ୍ତେ ଜାଣିବାକୁ ପାଇଲେ । ତାହାହିଁ ସବୁଦିନ ପାଇଁ ସର୍ବଜନବିଦିତ ହୋଇ ରହିଲା । "ମାଷ୍ଟର" ନିର୍ବାଚନ ଭଳି ନିୟମାନୁମୋଦିତ କାମ ପାଇଁ ମଧ୍ୟ ସେ ଗୀର୍ଜା ଯିବାକୁ ମନା କରିଦେଉଥିଲେ । କେତେଜଣ ପାଦ୍ରି ତାଙ୍କ ବନ୍ଧୁଥିଲେ ସତ କିନ୍ତୁ ଭଗବାନ ଥିଲେ ତାଙ୍କ ବ୍ୟକ୍ତିଗତ ଶତ୍ରୁ । ତାଙ୍କର ଏ ପ୍ରକୃତି ପଛରେ ଉନବିଂଶ ଶତାବ୍ଦୀର ପ୍ରତିଧ୍ୱନୀ ତ ଥିଲା କିନ୍ତୁ ହାର୍ଡିଙ୍କ କଥାକୁ ବିଶ୍ୱାସ ନ କରିବା ଏକ ମସ୍ତବଡ଼ ଭୁଲ ହେବ ।

ଖୁବ୍ ଅଭାବନୀୟ ପରିସ୍ଥିତିରୁ କିଛି ଆନନ୍ଦ ଉଠାଇବାର ବିଶେଷ କ୍ଷମତା ତାଙ୍କର ଥିଲା । ଉଣେଇଶ ଶହ ତିରିଶ ମସିହା ପାଖାପାଖି ଦିନେ ଗୋଟିଏ ଛୋଟ କାଟିଆ "ବିଜୟ"କୁ ସେ ଖୁବ୍ ଉପଭୋଗ କରିବାର ମୋର ମନେ ଅଛି । ଲର୍ଡସ ପଡିଆରେ "ଜେଣ୍ଟଲମେନ୍" ଓ "ପ୍ଲେଆରସ୍"ଙ୍କ ଭିତରେ କ୍ରିକେଟ ଖେଳ ହେଉଥାଏ । ନର୍ସରୀ ଦିଗକୁ ଅନାଇ ଖେଳୁଥିବା ଜଣେ ବ୍ୟାଟସ୍‌ମ୍ୟାନ ଅଭିଯୋଗ କଲେ ଯେ କେଉଁ ଏକ ଅଜଣା ଯାଗାରୁ ଆଲୁଅ ଆସି ତାଙ୍କ ଆଖିରେ ପଡୁଛି, ତେଣୁ ତାଙ୍କୁ କିଛି ଦେଖାଯାଉ ନାହିଁ । ଅମ୍ପାୟାରମାନେ ମଧ୍ୟ କେଉଁଠି କିଛି ପାଇଲେ ନାହିଁ । ସାଇଟସ୍କ୍ରିନର ଦୁଇପଟେ ଖୋଜାଖୋଜି କଲେ । ମଟର କାର୍ ? ନା । ଝରକା କାଚ ? ନା । ଏଭଳି କିଛି ପଡିଆର ସେପଟେ ନଥିଲା । ଶେଷରେ ଜଣେ ଅମ୍ପାୟାର ଆଲୁଅ ଆସୁଥିବା ସ୍ଥାନଟିକୁ ଚିହ୍ନଟ କରିବାରେ ସଫଳ ହେଲେ ! ଜଣେ ବପୁବନ୍ତ ପାଦ୍ରୀଙ୍କ ଛାତିରେ ଝୁଲୁଥିବା କ୍ରସ୍‌ରୁ ହିଁ ଆଲୁଅ ପ୍ରତିଫଳିତ ହୋଇ ଆସୁଥିଲା ! ଅମ୍ପାୟାର ଜଣକ ନମ୍ରତାର ସହ ସେହି ଚେନ୍‌ଟିକୁ ଖୋଲି ଦେବା ପାଇଁ ପାଦ୍ରୀଙ୍କୁ କହିଲେ । ଏସବୁ ଦେଖି ପାଦ୍ରୀଙ୍କ ପାଖରେ ବସିଥିବା ହାର୍ଡିଙ୍କ ମନ ଗୋଟେ ମେଫିଷ୍ଟୋଫେଲୀୟ ବିଦ୍ରୂପଭରା ଖୁସିରେ

ଉଛୁଳି ପଡୁଥାଏ । ଖରାବେଳେ ଖାଇବାରେ ତାଙ୍କ ମନ ଆଦୌ ନଥାଏ । ସେ କେବଳ ତାଙ୍କ ପାଦ୍ରୀ ସାଙ୍ଗମାନଙ୍କୁ ପୋଷ୍ଟକାର୍ଡ ଲେଖିବାରେ ବ୍ୟସ୍ତ ଥାଆନ୍ତି । (ପୋଷ୍ଟକାର୍ଡ଼ ଓ ଟେଲିଗ୍ରାମ ମାଧ୍ୟମରେ ଭାବ ବିନିମୟ କରିବାକୁ ସେ ଖୁବ୍ ଭଲ ପାଉଥିଲେ) ।

କିନ୍ତୁ ଭଗବାନ ବା ଭଗବାନଙ୍କ ପ୍ରତିନିଧିମାନଙ୍କ ବିରୁଦ୍ଧରେ ସେ କରୁଥିବା ସଂଗ୍ରାମରେ ବିଜୟ ସବୁବେଳେ ଏକପାଖିଆ ହେଉନଥିଲା । ଥରେ ଏକ ନିଶବ୍ଦ ସୁନ୍ଦର ମେ' ମାସ ସନ୍ଧ୍ୟାରେ ଛଅଟା ବାଜିବାର ଗୀର୍ଜାଘଣ୍ଟିଶବ୍ଦ ଫେନ୍ନ ପଡିଆସାରା ଖେଳିଗଲା । ହାର୍ଡି ସ୍ୱାଭାବିକ ଭାବରେ କହି ଉଠିଲେ, "ଏହା ଏକ ଦୁର୍ଭାଗ୍ୟର କଥା ଯେ ମୋ ଜୀବନର କେତେକ ସବୁଠାରୁ ଅଧିକ ଆନନ୍ଦମୟ ମୁହୂର୍ତ୍ତ ରୋମାନ କାଥଲିକ ଚର୍ଚ୍ଚର ଘଣ୍ଟା ଶବ୍ଦ ଭିତରେ ହିଁ ମିଳିଛି ।"

ପ୍ରାକ୍-ସ୍ନାତକ ସମୟର ଦ୍ୱିତୀୟ ଭାଗ୍ୟନିର୍ଦ୍ଧାରଣକାରୀ ଘଟଣାଟି ଥିଲା ମେଧାବୃତ୍ତି ସମ୍ପର୍କିତ । ମୋଟାମୋଟି ଭାବରେ ନିୟୁଟନଙ୍କ ସମୟ ଠାରୁ ଉନବିଂଶ ଶତାବ୍ଦୀସାରା କେମ୍ବ୍ରିଜ ବିଶ୍ୱବିଦ୍ୟାଳୟରେ ଗଣିତ ଟ୍ରାଇପସ୍ (ଅନର୍ସ) ପରୀକ୍ଷା ପାରମ୍ପରିକ ରୀତିରେ ଆଧିପତ୍ୟ ବିସ୍ତାର କରି ରହିଥିଲା । ସବୁ ଲୋକମାନଙ୍କ ମଧ୍ୟରେ ଇଂରେଜମାନେ ପ୍ରତିଯୋଗିତାମୂଳକ ପରୀକ୍ଷା ଗୁଡିକ ଉପରେ ସର୍ବାଧିକ ବିଶ୍ୱାସ ପ୍ରକଟ କରିଥାଆନ୍ତି (ହୁଏତ କେବଳ ଚୀନ୍ ସାମ୍ରାଜ୍ୟ ବ୍ୟତୀତ) । ସେମାନେ ଏହି ପରୀକ୍ଷା ଗୁଡ଼ିକୁ ଅତ୍ୟନ୍ତ ସଚ୍ଚୋଟତାର ସହ ପରିଚାଳନା କରିବାର ପରମ୍ପରା ସୃଷ୍ଟି କରିଥାଆନ୍ତି । କିନ୍ତୁ କେଉଁ ବିଷୟକୁ ନେଇ କିଭଳି ଭାବରେ ପରୀକ୍ଷା ହେବା କଥା ସେ ବିଷୟରେ ଆଶ୍ଚର୍ଯ୍ୟଜନକ ଚିନ୍ତାଶୂନ୍ୟତା ଦେଖିବାକୁ ମିଳିଥାଏ । ଆଜି ପର୍ଯ୍ୟନ୍ତ ମଧ୍ୟ କଥାଟା ଅବିକଳ ସେହିଭଳି ଅଛି । ଖୁବ୍ ମର୍ଯ୍ୟାଦାସମ୍ପନ୍ନ ଗଣିତ ଟ୍ରାଇପସ୍‌ର ଅବସ୍ଥା ମଧ୍ୟ ସେୟା । ଏହି ପରୀକ୍ଷାର ପ୍ରଶ୍ନ ଗୁଡିକ ଯନ୍ତ୍ରଚାଳିତ ଭାବରେ ଅଙ୍କ କଷାକଷି ଦୃଷ୍ଟିରୁ ଖୁବ୍ କଷ୍ଟତ ନିଶ୍ଚୟ ଥିଲା କିନ୍ତୁ ଦୁର୍ଭାଗ୍ୟବଶତଃ ଏଥିରେ ପରୀକ୍ଷାର୍ଥୀ ନିଜର ଗାଣିତିକ କଳ୍ପନା ବା ଅନ୍ତର୍ଦୃଷ୍ଟି ବା ଜଣେ ସୃଜନଶୀଳ ଗଣିତଜ୍ଞ ଆବଶ୍ୟକ କରୁଥିବା ଗୁଣ ପ୍ରକାଶ କରିବାର କୌଣସି ସୁଯୋଗ ନଥିଲା । ପ୍ରଥମ ଶ୍ରେଣୀରେ ପାସ କରୁଥିବା ପରୀକ୍ଷାର୍ଥୀ (ରାଙ୍ଗଲର୍) ମାନଙ୍କ ନାମ ନମ୍ବର ଅନୁସାରେ ସଜା ହେଉଥିଲା । ଯଦି କୌଣସି କଲେଜର ଛାତ୍ର ସିନିୟର ରାଙ୍ଗଲର୍ ହେଉଥିଲା ତେବେ ସେମାନେ ଖୁସିରେ ଉତ୍ସବ ପାଳନ କରୁଥିଲେ । ପ୍ରଥମ ଦୁଇ-ତିନି ଜଣ ରାଙ୍ଗଲର ତତ୍‌କ୍ଷଣାତ୍ ଗବେଷକ ବୃତ୍ତି (ଫେଲୋ) ପାଇଯାଉଥିଲେ ।

ଏସବୁ ଥିଲା ଐକାନ୍ତିକ ଭାବରେ ଇଂରେଜ ପରମ୍ପରା । ଏହି ପରମ୍ପରାର ଏକ ବିରାଟ ପ୍ରତିକୂଳ ପ୍ରଭାବ ଥିଲା । ଏହା ପ୍ରାୟ ଶହେ ବର୍ଷ କାଳ ଇଂଲଣ୍ଡରେ ଗଣିତର ଗଭୀର ଅଧ୍ୟୟନକୁ ବସ୍ତୁତଃ ନଷ୍ଟ କରିଦେଇଥିଲା । ତେଣୁ ଜଣେ ବିଖ୍ୟାତ ଗଣିତଜ୍ଞ ହେବାର ସୁନାମ ମିଳିବା ମାତ୍ରେ ହିଁ ହାର୍ଡି ତାଙ୍କର ଘନିଷ୍ଠ ତଥା ସମଭାବରେ ଦୃଢ଼-ମନା ସହଯୋଗୀ ଲିଟ୍‌ଲଉଡ୍‌ଙ୍କ ସହ ମିଶି ଏହି ପରମ୍ପରାର ଅବସାନ ପାଇଁ ଲାଗି ପଡିଥିଲେ ।

ଟ୍ରିନିଟିର ଛାତ୍ର ଭାବରେ ସେ ଉପରୋକ୍ତ ପରମ୍ପରାରେ ଛନ୍ଦି ହୋଇଗଲେ । ଘୋଡାଦୌଡର ଘୋଡା ଭଳି ତାଙ୍କୁ ଗଣିତର ପ୍ରଶ୍ନୋତ୍ତର ଅଭ୍ୟାସରେ ଆଖିବୁଜା ତାଲିମ ନେବାକୁ ହୋଇଥିଲା । ସିନିୟର ରାଙ୍ଗଲର୍ ହେବାର ସମ୍ଭାବନାଥିବା ଛାତ୍ରମାନେ ଯେଉଁ ସୁନାମଥିବା ପ୍ରଶିକ୍ଷକଙ୍କ ପାଖକୁ ଯାଉଥିଲେ ତାଙ୍କୁ ମଧ୍ୟ ସେଠାକୁ ପଠାଗଲା । ପ୍ରଶିକ୍ଷକ ଜଣଙ୍କୁ ପରୀକ୍ଷାରେ ଆସୁଥିବା ବିଭିନ୍ନ କୌଶଳ ତଥା ଭିନ୍ନ ଭିନ୍ନ କଷ୍ଟିଆ ଅଙ୍କର ଧାରା ବିଷୟରେ ସବୁକିଛି ଜଣାଥିଲା ସତ କିନ୍ତୁ ଗଣିତ ବିଷୟ ପ୍ରତି ତାଙ୍କର ସାମାନ୍ୟ ଆସକ୍ତି ନଥିଲା । ଏଭଳି ପରିବେଶରେ ଯୁବକ ଆଇନଷ୍ଟାଇନ ହୁଏତ ବିଦ୍ରୋହ କରିଥାଆନ୍ତେ; ହୁଏତ ସେ କେମ୍ବ୍ରିଜ ଛାଡି ଦେଇଥାଆନ୍ତେ ବା ତିନି ବର୍ଷ କାଳ ପ୍ରଥାନୁମୋଦିତ ପାଠ୍ୟକ୍ରମରେ ଆଦୌ ଭାଗ ନେଇ ନଥାନ୍ତେ । କିନ୍ତୁ ହାର୍ଡି ଅତ୍ୟନ୍ତ ବୃତ୍ତି କୈନ୍ଦ୍ରିକ ଇଂରେଜ ପରିବେଶରେ ଜନ୍ମ ନେଇଥିଲେ (ଏହାର ଭଲ ଓ ମନ୍ଦ ଦୁଇଟି ଦିଗ ଅବଶ୍ୟ ଥିଲା) । ଅଙ୍କ ବିମୁଖ ହୋଇ ଇତିହାସ ପଢ଼ିବାକୁ ମନ କିରବା ସମୟରେ ହିଁ ଜଣେ ପ୍ରକୃତ ଗଣିତଜ୍ଞଙ୍କ ପାଖରେ ଅଙ୍କ ପଢ଼ିବାର ସୁଯୋଗ ତାଙ୍କୁ ମିଳିଗଲା । ସେହି ଶିକ୍ଷକଙ୍କୁ ସମ୍ମାନ ଜଣାଇବାକୁ ଯାଇ ହାର୍ଡି "ଆତ୍ମଚିନ୍ତନ"ରେ ଲେଖିଛନ୍ତି; "ପ୍ରଫେସର ଲଭ୍ ହିଁ ମୋର ଆଖି ଖୋଲିଦେଲେ । ତାଙ୍କ ଠାରୁ ହିଁ ମୁଁ ଆନାଲିସିସର ଗୁରୁତ୍ୱ ବିଷୟରେ ପ୍ରଥମ ଧାରଣା ପାଇଲି । ସେ ଜଣେ ମୁଖ୍ୟତଃ ପ୍ରୟୋଗବାଦୀ ଗଣିତଜ୍ଞ ଥିଲେ ସତ କିନ୍ତୁ ମୁଁ ତାଙ୍କ ଠାରୁ ଯେଉଁ ବିରାଟ ଋଣ ସ୍ୱୀକାର କରିଛି ସେହିଟି ହେଲା ଜର୍ଡାନଙ୍କ "କୁର୍ସ ଦି ଆନାଲିଜେ" (Cours d'Analyse) ବହିଟି ପଢ଼ିବାର ଉପଦେଶ । ଯେଉଁ ଆଶ୍ଚର୍ଯ୍ୟ ଉତ୍ସାହ ଉଦ୍ଦୀପନା ସହ ମୁଁ ସେ ଅସାଧାରଣ ବହିଟି ପଢ଼ିଛି ତାହା କେବେ ଭୁଲି ପାରିବି ନାହିଁ । ମୋ' ସମୟର ଅସଂଖ୍ୟ ଗଣିତଜ୍ଞମାନଙ୍କ ପାଇଁ ଏହି ବହିଟି ପ୍ରଥମ ପ୍ରେରଣା ହୋଇ ରହି ଆସିଛି । ଏହି ବହିଟି ପଢ଼ି ମୁଁ ପ୍ରଥମ କରି ବୁଝିଲି ଯେ ଗଣିତର ପ୍ରକୃତ ଅର୍ଥ କ'ଣ । ସେହି ଦିନରୁ

ହିଁ ମୁଁ ଜଣେ ସଚ୍ଚା ଗଣିତଜ୍ଞ ହେବା ରାସ୍ତାରେ ଆଗେଇ ଚାଲିଲି, ଗଣିତ କ୍ଷେତ୍ରରେ ସୁସ୍ଥ ଉଚ୍ଚାଭିଳାଷ ଓ .ଗଭୀର ଅନୁରକ୍ତି ସହ ।"

୧୮୯୮ରେ ସେ ଚତୁର୍ଥ ରାଙ୍ଗଲର୍ ହେଲେ । ପରୀକ୍ଷାଫଳ ତାଙ୍କ ପାଇଁ ସାମାନ୍ୟ ଭାବରେ ବିରକ୍ତିକର ଥିଲା କାରଣ ସେ ଜଣେ ଜନ୍ମଗତ ପ୍ରତିଯୋଗୀ ଥିଲେ । ପ୍ରତିଯୋଗିତା ଯେତେ ଅର୍ଥହୀନ ହେଲେ ମଧ୍ୟ ସେ ଶ୍ରେଷ୍ଠସ୍ଥାନ ପାଇବା ଉଚିତ୍ ବୋଲି ଭାବୁଥିଲେ । ୧୯୦୦ ମସିହାରେ ସେ ଅଧିକ ମର୍ଯ୍ୟାଦାସମ୍ପନ୍ନ ଟ୍ରାଇପସ୍‌ର ଦ୍ୱିତୀୟ ଭାଗ ପରୀକ୍ଷା ଦେଲେ ଓ ନିଜର ଯୋଗ୍ୟତାନୁରୂପ ସ୍ଥାନ ପାଇ ଫେଲୋସିପ ଲାଭ କଲେ ।

ସେହି ଦିନଠାରୁ ତାଙ୍କ ଜୀବନର ମାର୍ଗ ସ୍ଥିରୀକୃତ ହୋଇଗଲା ବୋଲି କହିଲେ ଚଳେ । ନିଜ ଜୀବନର ଉଦ୍ଦେଶ୍ୟ ସେ ଭଲଭାବେ ଜାଣି ପାରିଥିଲେ । ସେହିଟି ଥିଲା ଇଂରେଜମାନଙ୍କ ଗଣିତ ଗବେଷଣାରେ ଶୁଦ୍ଧତା ଭରିଦେବା । ସେ ଇଚ୍ଛାନୁରୂପ ଗବେଷଣାରୁ କେବେ ହେଲେ ବିଚ୍ୟୁତ ହୋଇନଥିଲେ । ତାହାହିଁ ଥିଲା ତାଙ୍କ ନିଜ ଭାଷାରେ, "ମୋ ଜୀବନର ଏକ ଚିରସ୍ଥାୟୀ ଅଫୁରନ୍ତ ଆନନ୍ଦର ଉତ୍ସ ।" ଜୀବନରେ କ'ଣ କରିବେ ସେ ବିଷୟରେ ତାଙ୍କ ମନରେ କୌଣସି ଦ୍ୱନ୍ଦ୍ୱ ନଥିଲା । ନା ସେ ନିଜେ ବା ଅନ୍ୟ କେହି ତାଙ୍କ ପ୍ରତିଭା ବିଷୟରେ ସନ୍ଦିହାନ ଥିଲେ । ସେ ମାତ୍ର ତେତିଶ ବର୍ଷ ବୟସରେ ରୟାଲ ସୋସାଇଟିକୁ ଫେଲୋ ଭାବରେ ନିର୍ବାଚିତ ହୋଇଥିଲେ ।

ଅନେକ ଦୃଷ୍ଟିରୁ ସେ ଖୁବ୍ ଭାଗ୍ୟବାନ ଥିଲେ । ତାଙ୍କୁ ଚାକିରୀ ବିଷୟରେ ଚିନ୍ତା କରିବାକୁ ପଡି ନଥିଲା । ପାଖାପାଖି ତେଇଶ ବର୍ଷ ବୟସ ହେବା ଦିନଠୁ ଯେତେ ଅବସର ସେ ଚାହୁଁଥିଲେ ତାଙ୍କୁ ମିଳିଥିଲା । ତାହା ସହିତ ଆବଶ୍ୟକତାନୁଯାୟୀ ପଇସା । ୧୯୦୦ ମସିହା ବେଳକୁ ଟ୍ରିନିଟିର ଅବିବାହିତ ବରିଷ୍ଠ ଅଧ୍ୟାପକର ଜୀବନ ଥିଲା ଏକ ସ୍ୱଚ୍ଛନ୍ଦ ଜୀବନ । ହାର୍ଡି କିନ୍ତୁ ପଇସା ଖର୍ଚ୍ଚ କରିବାରେ ଖୁବ୍ ସଚେତନ ଥିଲେ । ଯେତେବେଳେ ଖର୍ଚ୍ଚ କରିବାକୁ ଇଚ୍ଛା ହେଉଥିଲା ଖର୍ଚ୍ଚ କରୁଥିଲେ (ବେଳେବେଳେ ଅନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟରେ ପଚାଶ ମାଇଲ ଟ୍ୟାକ୍ସିରେ ବୁଲିବା), ଅନ୍ୟଥା ଅର୍ଥ ନିବେଶ ଇତ୍ୟାଦିରେ ସେ ଖୁବ୍ ଅଣସଂସାରୀ ନଥିଲେ । ସେ ଇଚ୍ଛା ମୁତାବକ ନିଜ ଖେଳ ଖେଳୁଥିଲେ । ନିଜର ଅଦ୍ଭୁତ ଖିଆଲ ନେଇ ବଞ୍ଚୁଥିଲେ । ଜି.ଇ.ମୁର୍, ହ୍ୱାଇଟହେଡ୍, ବଟ୍ରାଣ୍ଡ ରସେଲ, ଟ୍ରେଭେଲୟାଁଙ୍କ ଭଳି ବିଖ୍ୟାତ ବ୍ୟକ୍ତିଗଣ ତଥା ଟ୍ରିନିଟିର ଉଚ୍ଚ ସମାଜକୁ ନେଇ ଗଠିତ ପୃଥିବୀର ଅନ୍ୟତମ ଶ୍ରେଷ୍ଠ ବୌଦ୍ଧିକ ପରିବେଶ ଭିତରେ ତାଙ୍କର ସମୟ କଟୁଥିଲା । ଖୁବ୍ କମ୍ ସମୟ ମଧ୍ୟରେ ଏମାନଙ୍କ ସହ

ବ୍ଲୁମସବରୀଙ୍କ ଯୋଗଦାନ ଫଳରେ କଳାତ୍ମକ ଦିଗର ଅଭାବ ମଧ୍ୟ ପୁରା ହୋଇଯାଇଥିଲା । (ହାର୍ଡିଙ୍କର ବ୍ଲୁମସବରୀଙ୍କ ସହ ବ୍ୟକ୍ତିଗତ ତଥା ଭାଗବତ ସମ୍ପର୍କ ଥିଲା ) । ଏଭଳି ଏକ ଜ୍ଞାନଦୀପ୍ତ ଗୋଷ୍ଠୀ ମଧ୍ୟରେ ସେ ଥିଲେ ଅନ୍ୟତମ ଶ୍ରେଷ୍ଠ ପ୍ରତିଭାସମ୍ପନ୍ନ ଯୁବକ । ଏବଂ ଅଲକ୍ଷିତ ଭାବରେ ସମସ୍ତଙ୍କ ଠାରୁ ଦୁର୍ଦ୍ଦମନୀୟ ।

ମୁଁ ପରେ ଯେଉଁକଥା କହିବି ବର୍ତ୍ତମାନ ତା'ର ପ୍ରାକ୍‌ସୂଚନା ଦେଉଛି । ସେ ବୁଢ଼ାହେବା ପର୍ଯ୍ୟନ୍ତ ତାଙ୍କ ଜୀବନ ଜଣେ ବିଚକ୍ଷଣ ଯୁବକର ଜୀବନ ଭଳି ରହିଥିଲା । ତାଙ୍କ ଅନ୍ତର୍ନିହିତ ମାନସିକତା ମଧ୍ୟ । ତାଙ୍କ ଖେଳ ଓ ରଚି ସବୁ କିଛି ତାଙ୍କୁ ଜଣେ ଯୁବ ଅଧ୍ୟାପକ ସୁଲଭ ଖୋଲା ମିଜାସରେ ରଖୁଥିଲା । ଆଉ, ଷାଠିଏ ବର୍ଷ ଟପିବା ପରଯାଏ ଯୁବସୁଲଭ ରଚି ରଖୁଥିବା ଅନେକ ଲୋକଙ୍କ ଭଳି ତାଙ୍କର ଶେଷ ବର୍ଷ ଗୁଡିକ ବେଶ୍ କଷ୍ଟଦାୟକ ଥିଲା ।

ତାଙ୍କ ଜୀବନର ବହୁତ ସମୟ ବହୁ ଲୋକଙ୍କ ତୁଳନାରେ ଅଧିକ ଆନନ୍ଦରେ କଟିଥିଲା । ତାଙ୍କର ଅନେକ ବନ୍ଧୁ ଥିଲେ ଓ ପୁଣି ଆଶ୍ଚର୍ଯ୍ୟଜନକ ଭାବରେ ଅନେକ ପ୍ରବୃତ୍ତିର । ସାଙ୍ଗ ହେବା ପାଇଁ ଏମାନଙ୍କୁ ହାର୍ଡିଙ୍କର କିଛି ବ୍ୟକ୍ତିଗତ ପରୀକ୍ଷା ନିରୀକ୍ଷାରେ ଉତ୍ତୀର୍ଣ୍ଣ ହେବାକୁ ପଡୁଥିଲା । ଅନ୍ତତଃପକ୍ଷେ ସେମାନଙ୍କର ଗୋଟିଏ ଗୁଣ ରହିବା ଆବଶ୍ୟକ ଥିଲା । ସେଇଟିକୁ ସେ କହୁଥିଲେ "ସ୍ପିନ୍" (ଏହା ଏକ କ୍ରିକେଟ ଶବ୍ଦ । ଅନୁବାଦ କରିବା କଷ୍ଟ । ଏହାର ମର୍ମ ଥିଲା ଏକ ପ୍ରକାର ଅବାଗିଆ ଜଟିଳ ପ୍ରକୃତି ବା କାମ କରିବାର ଢ଼ଙ୍ଗ । ସାମ୍ପ୍ରତିକ ରାଜନେତାଙ୍କ ମଧ୍ୟରୁ ମାକ୍‌ମିଲାନ ଓ କେନେଡି "ସ୍ପିନ" ଆକଳନରେ ବହୁତ ବେଶୀ ନମ୍ବର ପାଇବେ କିନ୍ତୁ ଚର୍ଚ୍ଚିଲ ଓ ଆଇଜେନହୋର ରହିବେ ବହୁତ ତଳେ) । କିନ୍ତୁ ସେ ଖୁବ୍ ସହନଶୀଳ, ବିଶ୍ୱସ୍ତ ଓ ଅତିରିକ୍ତ ଉତ୍‌ଫୁଲ୍ଲ ପ୍ରକୃତିର ଥିଲେ । ଅପ୍ରକାଶ୍ୟ ଭାବରେ ସେ ସାଙ୍ଗମାନଙ୍କୁ ଖୁବ୍ ଭଲ ପାଉଥିଲେ । ଥରେ ସକାଳବେଳା ମୁଁ ତାଙ୍କୁ ଭେଟିବାକୁ ବାଧ୍ୟ ହେଲି । ସେ ସମୟ ତାଙ୍କର ଗଣିତ ଗବେଷଣାର ସମୟ । ସେ ତାଙ୍କ ଟେବୁଲ ପାଖରେ ବସି ସୁନ୍ଦର ସୁନ୍ଦର ଅକ୍ଷରରେ ଲେଖିଚାଲିଥିଲେ । ଭଦ୍ରତା ଖାତିରରେ ଧୀର ଗଳାରେ ମୋ ଉପସ୍ଥିତି ଦ୍ୱାରା ତାଙ୍କର ଶାନ୍ତି ଭଙ୍ଗ କରୁନାହିଁ କି ବୋଲି ପଚାରିଦେଲି । ତତ୍‌କ୍ଷଣାତ ତାଙ୍କ ମୁଖମଣ୍ଡଳରେ ଏକ ପ୍ରକାର ଅବୁଝା ହସଖଣ୍ଡେ ଖେଳିଗଲା । "ତମେ ମୋର କାମରେ ଯେ ବାଧା ସୃଷ୍ଟି କଲ ଏକଥା ନିଶ୍ଚୟ ବୁଝି ପାରୁଥିବ । ତଥାପି ତମକୁ ଦେଖିଲେ ମତେ ସବୁବେଳେ ଖୁସି ଲାଗେ ।" ଆମର ଷୋହଳବର୍ଷର ପରିଚୟ ଭିତରେ ସେ କେବେହେଲେ

ଏହାଠାରୁ ଅଧିକ ଭାବରେ ତାଙ୍କ ଆବେଗକୁ ମୁହଁ ଖୋଲି ପ୍ରକାଶ କରିନଥିଲେ । କେବଳ ମୃତ୍ୟୁଶଯ୍ୟାରେ ପଡିଥିବା ବେଳେ ହିଁ ସେ ମୋର ଆସିବାକୁ ଅନାଇ ବସିବେ ବୋଲି ମୁହଁ ଖୋଲି କହିଥିଲେ ।

ମୋର ଅନୁଭୂତି ଯାହା ତାଙ୍କର ଅଧିକାଂଶ ବନ୍ଧୁମାନଙ୍କ ଅନୁଭୂତି ମଧ୍ୟ ସେୟା । କିନ୍ତୁ ତାଙ୍କ ଜୀବନ ଭିତରେ ଖେଳେଇ ହୋଇ ଏପରି ଦୁଇ-ତିନିଟି ସମ୍ପର୍କ ଥିଲା ଯେଉଁଗୁଡିକ ଅନେକ ଦୃଷ୍ଟିରୁ ନିଆରା । ସମ୍ପର୍କଗୁଡିକ ଥିଲା ଅତିଶୟ ସ୍ନେହାବିଷ୍ଟ, ଆସକ୍ତିଭରା, ଅଦୈହିକ କିନ୍ତୁ ପରମ ଆନନ୍ଦଦାୟୀ । ଜଣେ ଯୁବକଙ୍କ ସହ ତାଙ୍କର ଏହିଭଳି ଗୋଟିଏ ସମ୍ପର୍କ ବିଷୟରେ ମୁଁ ଜାଣେ । ଯୁବକ ଜଣଙ୍କ ଥିଲେ ତାଙ୍କ ଭଳି ଅତ୍ୟନ୍ତ କୋମଳ ସ୍ୱଭାବର । ଆକସ୍ମିକ କଥାବାର୍ତ୍ତାରୁ ମୁଁ ଯେତିକି ବୁଝିଛି ଅନ୍ୟ ସମ୍ପର୍କ ଗୁଡିକ ମଧ୍ୟ ଏହିଭଳି । ମୋ ସମସାମୟିକ ଅନେକ ଲୋକଙ୍କୁ ଏଭଳି ସମ୍ପର୍କ ସବୁ ଅବାନ୍ତର ଓ ଅସମ୍ଭବ ଲାଗିଥିବ । ସମ୍ପର୍କ ଗୁଡିକ ନା ଏ ପଟର ନା ସେପଟର । ସେଗୁଡିକ ଯେପରି ଦେଖାଯାଉଛନ୍ତି ସେହିଭଳି ଗ୍ରହଣ କରିନେଲେ ହାର୍ଡିଙ୍କ ଭଳି ଲୋକମାନଙ୍କୁ ବୁଝିବାରେ ପାଦେ ବି ଆଗେଇ ହେବ ନାହିଁ (ସେସବୁ ବିରଳ ସତ କିନ୍ତୁ ଧଳା ରାଇନୋସୋରସମାନଙ୍କ ଭଳି ନୁହଁନ୍ତି) । ଆଉ ତା ସହିତ କେମ୍ବ୍ରିଜ ପରିବେଶକୁ ମଧ୍ୟ । ଯେଉଁ ସବୁ ଆନନ୍ଦ ପଛରେ ଆମେ ଧାଇଁଥାଉ ଓ ଯାହାସବୁ ଆମର ନହେଲେ ନଚଳେ ସେ ସବୁରେ ତାଙ୍କର ଆସକ୍ତି ନଥାଏ । ସେ ନିଜକୁ ଖୁବ୍ ଭଲ ଭାବରେ ଚିହ୍ନିଥିଲେ । ତାଙ୍କର ଅନ୍ତଃଜୀବନ ଥିଲା ଏକାନ୍ତ ନିଜସ୍ୱ ଓ ଅତି ସମୃଦ୍ଧ । କେବଳ ଶେଷ ବେଳକୁ ହିଁ ଦୁଃଖ ଆସିଲା । ଜଣେ ସ୍ନେହଶୀଳା ବିଶ୍ୱସ୍ତ ଭଉଣୀ ବ୍ୟତୀତ ସେ ଆଉ କୌଣସି ନିଜ ଲୋକଙ୍କୁ ଦୁନିଆରେ ଛାଡି ଯାଇନଥିଲେ ।

ବିଦ୍ରୂପମିଶା ଉଦାରତା ସହ ସେ "ଆତ୍ମଚିନ୍ତନ"ରେ ଜଣେ ସୃଜନଶୀଳ ବ୍ୟକ୍ତି ନୂଆ କିଛି ସୃଷ୍ଟି କିରବାର ଦକ୍ଷତା ବା ଅଭିପ୍ସା ହରାଇବସିବା ବିଷୟରେ କହିଛନ୍ତି; "ଏହା ନିଶ୍ଚୟ ଦୁଃଖର କଥା । କିନ୍ତୁ ସେ ବ୍ୟକ୍ତିଙ୍କର ଆଉ ବିଶେଷ କିଛି ଉପଯୋଗିତା ନଥାଏ । ତେଣୁ ତାଙ୍କ ବିଷୟରେ ଚିନ୍ତା କରିବା ନିରର୍ଥକ ।" ବହୁ ଉଚ୍ଚ ଚିନ୍ତା ସମ୍ବଳିତ ହୋଇଥିଲେ ହେଁ "ଆତ୍ମଚିନ୍ତନ" ମୂଳତଃ ଗୋଟିଏ ହତାଶାଭରା ଦୁଃଖାନ୍ତକ ବହିଟିଏ । ଗଣିତ ବାହାରେ ସେ ନିଜ ଜୀବନକୁ ମଧ୍ୟ ଏହି ଦୃଷ୍ଟିରୁ ଦେଖୁଥିଲେ । ଗଣିତ କେବଳ ହିଁ ଥିଲା ତାଙ୍କ ଜୀବନର ଯଥାର୍ଥତା । ତାଙ୍କ ସାନିଧ୍ୟର ପ୍ରଗଲ୍ଭତା ଭିତରେ ଏହି କଥାଟିକୁ ଭୁଲିଯିବା ଖୁବ୍ ସହଜ । ଠିକ୍ ଯେପରି ଆଇନଷ୍ଟାଇନଙ୍କ

ଆଧ୍ୟାତ୍ମିକ ଆବେଗର ଆଶ୍ଲେଷରେ ଏକଥା ଭୁଲିହୋଇଯାଏ ଯେ ଭୌତିକ ଜଗତର ନିୟମ ଗୁଡ଼ିକର ସନ୍ଧାନ ହିଁ ଥିଲା ତାଙ୍କ ଜୀବନର ଯଥାର୍ଥତା । ସେ ଦୁଇଜଣ କିନ୍ତୁ ସେ କଥାକୁ କେବେହେଲେ ଭୁଲୁ ନଥିଲେ । ତାହାହିଁ ଥିଲା ସେମାନଙ୍କ ଜୀବନର ଅନ୍ତଃସ୍ୱର; ଯୌବନରୁ ମୃତ୍ୟୁଯାଏ ।

ଆଇନଷ୍ଟାଇନଙ୍କ ଭଳି ହାର୍ଡିଙ୍କ ଆରମ୍ଭ ଏତେ କ୍ଷୀପ୍ର ନଥିଲା । ୧୯୦୦ରୁ ୧୯୧୧ ମସିହା ମଧ୍ୟରେ ଲିଖିତ ତାଙ୍କ ଗବେଷଣା ସନ୍ଦର୍ଭ ଗୁଡ଼ିକ ବଳରେ ସେ ରୟାଲ ସୋସାଇଟିର ସଭ୍ୟପଦ ବା ଆନ୍ତର୍ଜାତିକ ସ୍ୱୀକୃତି ପାଇଥିଲେ ନିଶ୍ଚୟ କିନ୍ତୁ ସେଗୁଡ଼ିକୁ ସେ ଖୁବ୍ ପ୍ରାଧାନ୍ୟ ଦେଉନଥିଲେ । ଏହା ତାଙ୍କର ମିଥ୍ୟା ନମ୍ରତା ନଥିଲା । ଏହା ଥିଲା ଜଣେ ନିପୁଣ ଗଣିତଜ୍ଞଙ୍କ ସ୍ୱମୂଲ୍ୟାୟନ; ଯେ ନିଜ କାମର ପ୍ରତିଟି ଅଣୁକୁ ଚିହ୍ନିଥିଲେ ଓ ଜାଣିଥିଲେ କେଉଁ କାମଟି ମୂଲ୍ୟବାନ ଓ କେତେ ।

୧୯୧୧ରେ ସେ ଲିଟ୍‌ଲଉଡ୍‌ଙ୍କ ସହ ମିଶି ଗବେଷଣା ଆରମ୍ଭ କଲେ । ଏହି ସହଯୋଗିତା (Collaboration) ପଇଁତିରିଶ ବର୍ଷ ଧରି ଚାଲିଲା । ୧୯୧୩ରେ ସେ ରାମାନୁଜନଙ୍କୁ ଆବିଷ୍କାର କଲେ । ତାହା ସହ ଆରମ୍ଭ ହେଲା ଆଉ ଏକ ସହଯୋଗିତା । ତାଙ୍କର ସମସ୍ତ ପ୍ରମୁଖ କାମ ଗୁଡ଼ିକ ଏହି ଦୁଇଟି ସହଯୋଗିତା ଭିତରେ ହିଁ ହୋଇଥିଲା । ତନ୍ମଧ୍ୟରୁ ଅଧିକାଂଶ ଲିଟଲଉଡ୍‌ଙ୍କ ସହ ହୋଇଥିଲା ଯାହାକି ଗଣିତ ଇତିହାସରେ ଏକ ବିଖ୍ୟାତ ସହଯୋଗିତା ଭାବରେ ପରିଗଣିତ ହୁଏ । ମୋ ଜାଣତରେ ଏଭଳି ଏକ ପ୍ରଭାବଶାଳୀ ସହଯୋଗିତା କୌଣସି ବିଜ୍ଞାନ ବା ଅନ୍ୟକୌଣସି ସୃଜନଶୀଳ କାର୍ଯ୍ୟକ୍ରମରେ ଦେଖିବାକୁ ମିଳେ ନାହିଁ । ଦୁହେଁ ମିଶି ପାଖାପାଖି ଶହେଟି ସନ୍ଦର୍ଭ ଲେଖିଥିଲେ । ତା ଭିତରୁ ଅନେକ "ବ୍ରାଡମାନ ଶ୍ରେଣୀୟ" । ହାର୍ଡିଙ୍କ ସହ ସମ୍ପର୍କ ନଥିବା କିଛି ଗଣିତଜ୍ଞଙ୍କ ମତରେ ହାର୍ଡିଙ୍କର ଯୋଗ୍ୟତା ଆକଳନ ସାରଣୀରେ ଶ୍ରେଷ୍ଠ ସ୍ଥାନରେ ଥିଲା "ହବ୍‌ସଙ୍କ ଶ୍ରେଣୀ" । କିନ୍ତୁ କଥାଟି ଠିକ୍ ନୁହେଁ । ହବସ୍ ଯଦିଓ ତାଙ୍କର ଖୁବ୍ ପସନ୍ଦ ଥିଲେ ତଥାପି କୁଣ୍ଠାର ସହ ସେ ଯୋଗ୍ୟତାମାନରେ ସାମାନ୍ୟ ଅଦଳବଦଳ କରିବାକୁ ବାଧ୍ୟ ହୋଇଥିଲେ । ଥରେ ୧୯୩୮ ମସିହା ପାଖାପାଖି ସେ ଗୋଟିଏ ପୋଷ୍ଟକାର୍ଡ଼ରେ ମୋ ପାଖକୁ ଲେଖିଥିଲେ ଯେ, "ସମସ୍ତ ବ୍ୟାଟସମାନଙ୍କ ଉଚ୍ଚରେ ବ୍ରାଡମାନ ଏକ ସମ୍ପୂର୍ଣ୍ଣ ନିଜସ୍ୱ ଶ୍ରେଣୀର । ଯଦି ଆର୍କିମିଡିସ୍, ନିଉଟନ ଓ ଗାଉସ୍ "ହବସ ଶ୍ରେଣୀ"ରେ ରହିବେ ତେବେ ତାଙ୍କ ଉପରେ ଆଉ ଏକ ଉଚ୍ଚତର ଶ୍ରେଣୀର ଅସ୍ତିତ୍ୱ ମତେ ସ୍ୱୀକାର କରିବାକୁ ହେବ । ସତ କହିବାକୁ ଗଲେ

ସେ କଥା ଭାବିଲାବେଳକୁ ମତେ ବହୁତ କଷ୍ଟ ହୁଏ । ବରଂ ସେମାନଙ୍କୁ ବ୍ରାଡମାନ ଶ୍ରେଣୀକୁ ଉନ୍ନୀତ କରିବା ହିଁ ଶ୍ରେୟସ୍କର ।”

ହାର୍ଡି-ଲିଟଲଉଡଙ୍କ ଗବେଷଣା ଇଂରେଜ ଗବେଷକଙ୍କ ଶୁଦ୍ଧ-ଗଣିତ ଜଗତ କେବଳ ନୁହେଁ ପୃଥିବୀର ଶୁଦ୍ଧ-ଗଣିତ ଜଗତକୁ ଏକ ପୁରୁଷ ଧରି ଆଚ୍ଛନ୍ନ କରି ରଖିଥିଲା । ଗଣିତଜ୍ଞମାନେ ମତେ କହନ୍ତି ଯେ ସେ ଦୁହିଁଙ୍କ ଗବେଷଣା ଗାଣିତିକ ବିଶ୍ଳେଷଣର ଧାରାକୁ କିପରି ଭାବରେ ନୂଆଦିଗ ଦେବାରେ ସକ୍ଷମ ହେଲା ତାହା ଏତେଶୀଘ୍ର କୁହାଯାଇ ପାରିବ ନାହିଁ । କି ଆଜିଠୁ ଶହେ ବର୍ଷ ପରେ ସେମାନଙ୍କ ଗବେଷଣାର ଫଳ କିଭଳି ଭାବରେ ପରିଗଣିତ ହେବ ସେ କଥା ମଧ୍ୟ ହୁଏତ ଏବେଠାରୁ କହିବା କଷ୍ଟ । ତେବେ ସେମାନଙ୍କ ଗବେଷଣାର ଦୀର୍ଘ ସ୍ଥାୟିତ୍ୱ ବିଷୟରେ କାହାରି କୌଣସି ସନ୍ଦେହ ନାହିଁ ।

ମୁଁ ଯାହା କହିଛି ସେମାନଙ୍କ ସହଯୋଗିତା ଥିଲା ସବୁ ସହଯୋଗିତାମାନଙ୍କ ମଧ୍ୟରେ ଶ୍ରେଷ୍ଠ । କିନ୍ତୁ କେହି ଜାଣନ୍ତି ନାହିଁ ତାଙ୍କର ଏ ସହଯୋଗିତା କିପରି କାମ କରୁଥିଲା । ଲିଟଲଉଡ ଯଦି ଏ ବିଷୟରେ କିଛି ପ୍ରକାଶ ନ କରନ୍ତି କେହିବି ଭବିଷ୍ୟତରେ ଏକଥା ଜାଣି ପାରିବେ ନାହିଁ । ମୁଁ ଆଗରୁ କହି ରଖିଛି ଯେ ହାର୍ଡିଙ୍କ ଦୃଷ୍ଟିରେ ଲିଟଲଉଡ ହିଁ ଦୁହିଁଙ୍କ ଭିତରୁ ଅଧିକ ଶକ୍ତିଶାଳୀ ଗଣିତଜ୍ଞ ଥିଲେ । ହାର୍ଡି ଥରେ ଲିଟଲଉଡଙ୍କ ବିଷୟରେ ଲେଖିଥିଲେ ଯେ “ମୋ’ ଜାଣତରେ ଏଭଳି କେହି ଗଣିତଜ୍ଞ ନ ଥିଲେ ଯାହାଙ୍କ ଠାରେ ଲିଟଲଉଡ୍‌ଙ୍କ ଭଳି ଅନ୍ତର୍ଦୃଷ୍ଟି, କୌଶଳ ଓ ସୃଜନଶକ୍ତିର ପ୍ରଭାବଶାଳୀ ସମାହାର ଦେଖିବାକୁ ମିଳିଥିଲା ।” ଲିଟଲଉଡ୍ କିନ୍ତୁ ହାର୍ଡିଙ୍କ ତୁଳନାରେ ଅଧିକ ସାଧାରଣ ଲାଗୁଥିଲେ ଯଦିଓ ଦୁହେଁ ଏକାଭଳି ଦୃଷ୍ଟି ଆକର୍ଷକ ଓ ଜଟିଳ ବ୍ୟକ୍ତିତ୍ୱର ଅଧିକାରୀ ଥିଲେ । ସେ କିନ୍ତୁ ହାର୍ଡିଙ୍କ ଭଳି ପରିମାର୍ଜିତ ବୌଦ୍ଧିକ ଚାକଚକ୍ୟ ପ୍ରିୟ ନଥିଲେ ଓ ସେହି ପରିମାଣରେ ଶିକ୍ଷା ପରିବେଶର କେନ୍ଦ୍ରରେ ମଧ୍ୟ ସେତେଟା ନଥିଲେ । ସେଥିପାଇଁ ୟୁରୋପୀୟ ଗଣିତଜ୍ଞମାନେ ଥଟ୍ଟାରେ କହୁଥିଲେ ଯେ ହାର୍ଡି ଲିଟଲଉଡ୍‌କୁ ଉଦ୍ଭାବନ କରିଛନ୍ତି କାରଣ ସେମାନଙ୍କ ଉପପାଦ୍ୟରେ ଯଦି କିଛି ଭୁଲ ଭଟକା ବାହାରେ ତେବେ ସବୁ ଦୋଷ ତାଙ୍କ ମୁଣ୍ଡରେ ଲଦିଦେବେ । କିନ୍ତୁ ପ୍ରକୃତରେ ହାର୍ଡିଙ୍କ ଠାରୁ ଲିଟଲଉଡ୍ କୌଣସି ପ୍ରକାରେ କମ୍ ଜିଦ୍‌ଖୋର ପ୍ରକୃତିର ନଥିଲେ ।

ପ୍ରଥମ ଦେଖାରେ ଦୁଇଜଣଙ୍କ ମଧ୍ୟରୁ କାହାରିକୁ ଜଣେ ସହଜ ସହକର୍ମୀ ଭାବରେ

ଭାବିବା କଷ୍ଟ । ଏକଥା ମଧ୍ୟ ଭାବିବା କଷ୍ଟ ଯେ ଦୁଇଜଣଙ୍କ ମଧ୍ୟରୁ କିଏ ପ୍ରଥମେ ସହଯୋଗିତାର ପ୍ରସ୍ତାବ ଦେଇଥିବ । କେହି ତ ଜଣେ ଦେଇଥିବ ନିଶ୍ଚୟ । କିନ୍ତୁ କାହାରି ପାଖରେ ସେମାନଙ୍କ ସହଯୋଗିତା ଆରମ୍ଭ ବିଷୟରେ କିଛି ବି ତଥ୍ୟ ନାହିଁ । ଯେଉଁ ସମୟରେ ସେମାନେ ଅନେକ ଗୁଡ଼ିଏ ସନ୍ଦର୍ଭ ଏକାଠି ଲେଖିଥିଲେ ସେତେବେଳେ ସେମାନେ ଗୋଟିଏ ବିଶ୍ୱବିଦ୍ୟାଳୟରେ ମଧ୍ୟ ନଥିଲେ । ହାରାଲଡ୍ ବୋହର (ନିଲସ ବୋହରଙ୍କ ଭାଇ ଓ ଜଣେ ଉତ୍ତମ ଗଣିତଜ୍ଞ) କୁଆଡେ କହିଛନ୍ତି ଯେ ସେମାନଙ୍କ (ହାର୍ଡି ଓ ଲିଟଲଉଡ୍) ମିଳିତ ଗବେଷଣାର ଗୋଟିଏ ନିୟମ ହେଲା ଯେ ଯଦି ଜଣେ ଅନ୍ୟଜଣକୁ ଚିଠିଟିଏ ଦେବ ତେବେ ଅନ୍ୟଜଣକ ଚିଠିର ଉତ୍ତର ଦେବାକୁ ବାଧ୍ୟ ନଥିଲା, ଏପରିକି ଚିଠିଟି ପଢ଼ିବାକୁ ମଧ୍ୟ ନୁହେଁ ।

ମୁଁ ମଧ୍ୟ ଏ ବିଷୟରେ କିଛି କହିବା ଅବସ୍ଥାରେ ନାହିଁ । ଅନେକ ବର୍ଷର ପରିଚୟ ଭିତରେ ହାର୍ଡି ମୋ ସହିତ ଦୁନିଆର ପ୍ରାୟ ସବୁ ବିଷୟରେ କଥା ହୋଇଛନ୍ତି । କିନ୍ତୁ ଲିଟଲଉଡ୍‌ଙ୍କ ସହ ତାଙ୍କ ମିଳିତ ଗବେଷଣା କଥା ବିଷୟରେ ପଦୁଟିଏ ବି କହି ନାହାନ୍ତି । ଏହି ସହଯୋଗିତା ତାଙ୍କ ସୃଜନାତ୍ମକ ବୃତ୍ତି ପାଇଁ ଏକ ସୌଭାଗ୍ୟର କଥା ବୋଲି କହିଛନ୍ତି କିନ୍ତୁ ସହଯୋଗିତାର ତରିକା ବିଷୟରେ କିଛି ବି କହିନାହାନ୍ତି । ଆବଶ୍ୟକ ଗଣିତଜ୍ଞାନର ଅଭାବରୁ ମୁଁ ସେମାନଙ୍କ ସନ୍ଦର୍ଭ ଗୁଡ଼ିକୁ ବୁଝି ପାରୁନଥିଲି ସତ କିନ୍ତୁ ମୁଁ ତାଙ୍କର କିଛି ଭାଷାଗତ ଶୈଳୀ ବୁଝି ପାରୁଥିଲି । ତେଣୁ ତାଙ୍କ ସହଯୋଗିତାର ପଦ୍ଧତି ବିଷୟରେ କିଛି ବି ସୂଚନା ମୋ କାନରେ ପଡ଼ିଥିଲେ ମୁଁ କେବେହେଲେ ତାକୁ ଖସି ଯିବାକୁ ଦେଇନଥାନ୍ତି । ମୋର ଦୃଢ଼ ବିଶ୍ୱାସ ଯେ ଏହି ଗୋପନୀୟତାକୁ ସେ ଯତ୍ନର ସହ ରକ୍ଷା କରୁଥିଲେ ଯାହାକି ଅନ୍ୟାନ୍ୟ ଅନ୍ତରଙ୍ଗ କ୍ଷେତ୍ରରେ ତାଙ୍କର ସ୍ୱଭାବଗତ ନଥିଲା ।

ରାମାନୁଜନଙ୍କ ଆବିଷ୍କାର ବିଷୟରେ କୌଣସି କଥା ସେ ଗୋପନୀୟ ରଖି ନଥିଲେ । ଏହା ତାଙ୍କ ଜୀବନର ଏକମାତ୍ର ଆବେଗଭରା ଘଟଣା ବୋଲି ସେ ବର୍ଣ୍ଣନା କରିଛନ୍ତି । ଯାହା ବି ହେଉ ଏହା ଏକ ଅତ୍ୟନ୍ତ ଅଭିନନ୍ଦନୀୟ ଘଟଣା । ଏହି ଘଟଣା ସହ ସମ୍ପୃକ୍ତ ସମସ୍ତ ଚରିତ୍ରଙ୍କ (କେବଳ ଦୁଇଜଣଙ୍କ ବ୍ୟତୀତ) ପାଇଁ ଗର୍ବ ଓ ସମ୍ମାନର କଥା । ୧୯୧୩ ମସିହା ପ୍ରାକ୍‌କାଳର କଥା । ଦିନେ ସକାଳ ଜଳଖିଆ ଟେବୁଲ ଉପରେ ସେଦିନର ଡାକ ଭିତରେ ଭାରତୀୟ ଷ୍ଟାମ୍ପରେ ଭର୍ତ୍ତି ଗୋଟିଏ ବଡ଼ ନୋଉକୋଉ ଲଫାପାଟିକୁ ଦେଖିଲେ । ଲଫାପାଟି ଖୋଲି ଦେଖିଲେ ଅନେକ

ଗୁଡିଏ ପୁରୁଣା କାଗଜ ପୃଷ୍ଠାରେ ଧାଡି ପରେ ଧାଡି ଗାଣିତିକ ସଙ୍କେତ ସବୁ ହାତରେ ଲେଖାହୋଇଛି । ସେ କେବଳ ନଜର ଟିକେ ବୁଲାଇନେଲେ । ସେତେବେଳେକୁ ତାଙ୍କୁ ଛତିଶ ବର୍ଷ । ସେ ମଧ୍ୟ ଜଣେ ପୃଥିବୀ ବିଖ୍ୟାତ ଗଣିତଜ୍ଞ । ତେଣୁ ତାଙ୍କୁ ଭଲ ଭାବରେ ଜଣାଥିଲା ଯେ ପୃଥିବୀ ବିଖ୍ୟାତ ଗଣିତଜ୍ଞ ମାନେ ହିଁ ପାଗଳମାନଙ୍କ ସହଜ ଶିକାର ଭାବରେ ବ୍ୟବହୃତ ହୋଇଥାଆନ୍ତି । ଅଜଣା ଲୋକମାନଙ୍କ ଠାରୁ ଏଭଳି ଲେଖାସବୁ ପାଇବାରେ ସେ ଅଭ୍ୟସ୍ତ ହୋଇସାରିଥାଆନ୍ତି । କେଉଁଠି ପିରାମିଡ ଗଠନର ଭବିଷ୍ୟତବାଣୀତ ଆଉ କେଉଁଠି ଜେରୁଜେଲମର ମୁଖ୍ୟମାନେ ପାଇଥିବା ଐଶ୍ୱରୀୟ ଜ୍ଞାନ ତଥା ସେକ୍ସପିୟରଙ୍କ ନାଟକରେ ବ୍ୟାକନ ଯୋଡିଦେଇଥିବା ଗୁପ୍ତଲେଖା ଇତ୍ୟାଦିର ପ୍ରମାଣର ଦାବିପତ୍ର ଉପସ୍ଥାପନ କରାଯାଇଥାଏ ।

ତେଣୁ ହାର୍ଡି ଟିକେ ବିରକ୍ତି ବୋଧକଲେ । ସେ ଚିଠିଟିକୁ ମଧ୍ୟ ଦେଖିଲେ । ଜଣେ ଅପରିଚିତ ଭାରତୀୟ ଖଣ୍ଡି ଇଂରାଜୀରେ ନିଜ ଗାଣିତିକ ଆବିଷ୍କାର ଗୁଡିକ ଉପରେ ମତାମତ ଦେବାପାଇଁ ତାଙ୍କୁ ଅନୁରୋଧ ଜଣାଇଥାଆନ୍ତି । ଲେଖାଟିରେ ଅନେକ ଗୁଡିଏ ଉପପାଦ୍ୟ ଥାଏ । ସେଥିମଧ୍ୟରୁ ଅଧିକାଂଶ ଅଧାପନ୍ତରିଆ ଓ ଅଦ୍ଭୁତ ଦେଖାଯାଉଥିଲେ । ଗୋଟେ ଦୋ'ଟି ଖୁବ୍ ଜଣାଶୁଣା ଥିଲେ ମଧ୍ୟ ନୂଆଭଳି ଉପସ୍ଥାପନ କରାଯାଇଥିଲା । କେଉଁଠି ହେଲେ କୌଣସି ପ୍ରକାରର କିଛି ପ୍ରମାଣ ନଥିଲା । ହାର୍ଡି ଏସବୁ ଦେଖି କ୍ଳାନ୍ତ ବୋଧ କରିବା ସହ ବିରକ୍ତ ମଧ୍ୟ ହେଲେ । ସବୁକିଛି ଜଣେ ଠକ ଲୋକର କାମ ଭଳି ଲାଗିଲା । ସବୁ କାଗଜପତ୍ର ଥୋଇଦେଇ ସେ ଦୈନନ୍ଦିନ କାମରେ ଲାଗିଲେ । ତାଙ୍କ ଦୈନନ୍ଦିନ ରୀତିନୀତିରେ କସ୍ମିନକାଳେ କିଛି ବ୍ୟତିକ୍ରମ ଘଟୁନଥିବାରୁ ତାକୁ ପୁନର୍ଗଠନ କରିବା ଅତି ସହଜ । ପ୍ରଥମେ ଜଳଖିଆ ଖାଉ ଖାଉ ଦୈନିକ "ଦି ଟାଇମସ" ପଢ଼ିଲେ । ଏଇଟା ଜାନୁୟାରୀ ମାସର କଥା' । ଯଦି ଖବରକାଗଜରେ ଅଷ୍ଟ୍ରେଲିଆ କ୍ରିକେଟ ଖେଳ କଥା ଥାଆନ୍ତା ତେବେ ସେ ସେହିଠାରୁ ହିଁ ପଢ଼ା ଆରମ୍ଭ କରିଥାଆନ୍ତେ । ଆଉ କ୍ରିକେଟ ଖବର ପ୍ରାଞ୍ଜଳ ଭାବରେ ଧ୍ୟାନର ସହିତ ପଢ଼ିଥାଆନ୍ତେ ।

ହାର୍ଡିଙ୍କ ବନ୍ଧୁ ତଥା ଗଣିତଜ୍ଞ ଭାବରେ ଜୀବନ ଆରମ୍ଭ କରିଥିବା ମେନାର୍ଡ କିନ୍‌ସ ତାଙ୍କୁ ଥରେ ବହୁତ ଗାଳି କରିଥିଲେ । ତାଙ୍କ କହିବା କଥା ଥିଲା, ହାର୍ଡି କ୍ରିକେଟ ଖବର ସବୁ ଯେତିକି ଧ୍ୟାନର ସହିତ ପଢୁଥିଲେ ସେତିକି ଧ୍ୟାନ ଦେଇ ଯଦି ପ୍ରତିଦିନ ଅଧଘଣ୍ଟାଏ ଷ୍ଟକ୍ ଏକ୍ସଚେଞ୍ଜ ଖବର ପଢ଼ନ୍ତେ ତେବେ ଜଣେ ଧନୀ ଲୋକ ହେବାରୁ ତାଙ୍କୁ କେହି ଅଟକେଇ ପାରିନଥାନ୍ତେ ।

ତା'ପରେ ଅଧ୍ୟାପନା ଦାୟିତ୍ୱ ନଥିଲେ ନ' ଟାରୁ ଦିନ ଗୋଟାଏ ପର୍ଯ୍ୟନ୍ତ ସେ ନିଜ ଗଣିତ ଗେବଷଣାରେ ଲାଗିଯାଆନ୍ତି । ସେ କହନ୍ତି ଯେ ଦିନକୁ ଚାରିଘଣ୍ଟା ସୃଜନାତ୍ମକ କାମ ଜଣେ ଗଣିତଜ୍ଞ ପାଇଁ ଯଥେଷ୍ଟ । ଅଧ୍ୟାପନା ବା ଗବେଷଣା ପରେ ଖାଇବା ହଲ୍‌ରେ ହାଲୁକା ମଧ୍ୟାହ୍ନ ଭୋଜନ । ତା'ପରେ ସେ ଖସି ଯାଉଥିଲେ ବିଶ୍ୱବିଦ୍ୟାଳୟ କୋର୍ଟରେ ଟେନିସ ଖେଳ ପାଇଁ । (ଗ୍ରୀଷ୍ମଦିନ ହୋଇଥିଲେ ଫେନ୍ନରକୁ କ୍ରିକେଟ ଖେଳ ଦେଖିବାକୁ ଚାଲି ଯାଇଥାଆନ୍ତେ) । ଅପରାହ୍ନ ଶେଷ ବେଳକୁ ପ୍ରକୋଷ୍ଠକୁ ପ୍ରତ୍ୟାବର୍ତ୍ତନ । ସେ ଦିନ କିନ୍ତୁ ଯଦିଓ ତାଙ୍କ ଦୈନନ୍ଦିନ ସମୟ ନିର୍ଘଣ୍ଟରେ କୌଣସି ବ୍ୟତିକ୍ରମ ହୋଇନଥିଲା ତଥାପି ଭିତରେ ଭିତରେ ସବୁକିଛି ଗତାନୁଗତିକ ଧାରାରେ ଚାଲୁନଥିଲା । ମୁଣ୍ଡ ଭିତରେ ଅଜଣା ଭାରତୀୟଙ୍କ ହାତଲେଖାଟି ସମୟକୁ ସମୟ ଉଙ୍କି ମାରି ଖେଳର ମଜା ବି ନଷ୍ଟ କରି ଦେଉଥିଲା । ଅଦ୍ଭୁତ ଉପପାଦ୍ୟସବୁ ! ସେଭଳି ଉପପାଦ୍ୟସବୁ ସେ ଆଗରୁ କେବେ ଦେଖିନଥିଲେ ବା କଳ୍ପନା ମଧ କରିନଥିଲେ । ଲୋକଟି କ'ଣ ଜଣେ ଶଠ ଜିନିୟସ ? ପ୍ରଶ୍ନଟି ତାଙ୍କ ମୁଣ୍ଡ ଭିତରେ ଖେଳି ବୁଲୁଥିଲା । ସେ ପୁଣି ହାର୍ଡିଙ୍କ ମସ୍ତିଷ୍କ । ତେଣୁ ପ୍ରଶ୍ନଟି ପୂର୍ଣ୍ଣ ପ୍ରାଞ୍ଜଳତା ସହ ଖେଳୁଥାଏ । ସେ ଭାବୁଥିଲେ, ଜଣେ ଜିନିୟସ ଶଠ ହେବା, ଜଣେ ଗାଣିତିକ ଜିନିୟସ ହେବା ଠାରୁ କ'ଣ ଅଧିକ ସମ୍ଭାବନା ପୂର୍ଣ୍ଣ ? ଉତ୍ତରଟି ନିଶ୍ଚିତ ଭାବରେ "ନା" । ତାଙ୍କ ରୁମ୍‌କୁ ଫେରି ସେ ପୁଣିଥରେ ହାତଲେଖାଟିକୁ ପଢ଼ିବାକୁ ଲାଗିଲେ । ଆଉ କିଛି ବାଟ ନ ପାଇ ରାତ୍ରି ଭୋଜନ ପରେ ସେମାନେ ମିଶି ପ୍ରାପ୍ତ ଲେଖାଟି ଉପରେ ଆଲୋଚନା କରିବା ପାଇଁ ଲିଟ୍‌ଲଉଡ୍‌ଙ୍କ ପାଖକୁ ଖବର ପଠାଇଲେ । (ନିଶ୍ଚୟ ଜଣେ ବାର୍ତ୍ତାବହ ହାତରେ । ଟେଲିଫୋନଦ୍ୱାରା ତ କେବେବି ନୁହେଁ କାରଣ ଫାଉଣ୍ଟେନ ପେନ୍ ଠାରୁ ଆରମ୍ଭ କରି ସମସ୍ତ ଯାନ୍ତ୍ରିକ ଉପକରଣ ପ୍ରତି ତାଙ୍କର ଥିଲା ଗଭୀର ଅଶ୍ରଦ୍ଧା ଓ ଅବିଶ୍ୱାସ ।)

ରାତିର ଖାଇବା ପରେ ଟିକେ ବିଳମ୍ବ ହୋଇଥାଇପାରେ । ହାର୍ଡି ଚିରାଚରିତ ୱାଇନ ଗିଲାସଟେ ପିଇଲେ ସତ କିନ୍ତୁ "ଆଲାନ ସେଣ୍ଟ ଆଉବାଁ"ର ମହକମୟ କଳ୍ପନା ଯାହାକି ଦିନେ ତାଙ୍କ ଯୁବ ସୁଲଭ ମନରେ ପର ଯୋଡି ଦେଉଥିଲା ଏବେ ଅର୍ଥହୀନ ମନେ ହେଲା । କମ୍ବିନେସନ ରୁମରେ ବେଶୀ ସମୟ କଟାଇବାରେ ତାଙ୍କର ଆଉ ମନ ଲାଗୁ ନଥିଲା, ମନ ନଥିଲା ୱାଇନରେ ନା ଅଖରୋଟ ବାଦାମ ଖାଇବାରେ । କିନ୍ତୁ ସାମାନ୍ୟ ଅଧିକ ରସିକ ପ୍ରକୃତିର ଲିଟଲଉଡ ସେ ସବୁର ଫାଇଦା ଉଠାଇବାରେ

ହେଳା କରୁନଥିଲେ । ସେଥିଲାଗି ସାମାନ୍ୟ ବିଳମ୍ବ ହୋଇଥାଇପାରେ । ଯାହାବି ହେଉ ରାତି ନ'ଟା ପାଖାପାଖି ହାର୍ଡିଙ୍କ ପ୍ରକୋଷ୍ଠରେ ଦିହେଁ ପହଞ୍ଚି ଯାଇଥିଲେ । ଆଗରେ ତାଙ୍କର ଖେଳେଇ ହୋଇ ପଡି ରହିଥିଲା ହାତଲେଖା ନୋଉକୋଉ ମାଟିଆ ରଙ୍ଗର କାଗଜ ପୃଷ୍ଠା ଗୁଡିକ ।

ଏହା ଏଭଳି ଏକ ଐତିହାସିକ ମୁହୂର୍ତ୍ତ ଥିଲା ଯେତେବେଳେ କି ଯେ କେହି ମଣିଷ ଉପସ୍ଥିତ ରହିବାକୁ ଚାହିଁବ । ହାର୍ଡିଙ୍କର ପାଖରେ ଥିଲା ଅସାଧାରଣ ମାନସିକ ସ୍ୱଚ୍ଛତା ଓ ବୌଦ୍ଧିକ ସାହସ । (ସେ ଇଂରେଜ ଥିଲେ ସତ କିନ୍ତୁ ତର୍କ କ୍ଷେତ୍ରରେ ତାଙ୍କର ଥିଲା ରୋମାନ୍‌ଙ୍କ ସଦୃଶ ଦକ୍ଷତା) । ଲିଟଲଉଡ୍ ଥିଲେ କଳ୍ପନାପ୍ରିୟ, ଶକ୍ତିଶାଳୀ ଓ କୌତୁକିଆ । ସମ୍ଭବତଃ ସେମାନଙ୍କୁ ବେଶୀ ସମୟ ଲାଗିନଥିଲା । ମଧ୍ୟରାତ୍ରି ପୂର୍ବରୁ ସେମାନେ ସମ୍ପୂର୍ଣ୍ଣ ନିଶ୍ଚିତତା ସହ ଜାଣିପାରିଥିଲେ ଯେ ହାତଲେଖାଟିର ଲେଖକ ଜଣେ ଅଦ୍ଭୁତ ପ୍ରତିଭା ସମ୍ପନ୍ନ ବ୍ୟକ୍ତି । ଜଣେ ଜିନିୟସ୍ । ସେଦିନ ରାତିରେ ସେମାନେ କେବଳ ସେତିକି ହିଁ ଠଉରାଇ ପାରିଥିଲେ । ପରେ ଅବଶ୍ୟ ହାର୍ଡି ବୁଝିପାରିଥିଲେ ଯେ ପ୍ରାକୃତିକ ଗାଣିତିକ ପ୍ରତିଭା କ୍ଷେତ୍ରରେ ରାମାନୁଜନ ଥିଲେ ଗାଉସ୍ ଓ ଅଏଲରଙ୍କ ଶ୍ରେଣୀର । କିନ୍ତୁ ତାଙ୍କ ଠାରୁ ସେଭଳି ଚମତ୍କାରୀ ଅବଦାନ ଆଶା କରିବା ବୃଥା ଥିଲା । କାରଣ ହେଲା ତାଙ୍କର ଦୂର୍ବଳ ଶିକ୍ଷା ଓ ଗଣିତ ଇତିହାସର ପ୍ରବାହଧାରାରେ ତାଙ୍କର ବିଳମ୍ବିତ ପ୍ରବେଶ ।

କଥାଟି ଶୁଣିବାକୁ ଖୁବ୍ ସହଜ ଲାଗୁଛି ଯେ ବିଖ୍ୟାତ ଗଣିତଜ୍ଞମାନଙ୍କ ପକ୍ଷରେ ଗୋଟିଏ ସିଦ୍ଧାନ୍ତରେ ପହଞ୍ଚିବାରେ କଷ୍ଟ ବା କ'ଣ । ତଥାପି ମୁଁ ଆଗରୁ ଉଲ୍ଲେଖ କରିଛି ଯେ ସମ୍ପୂର୍ଣ୍ଣ କାହାଣୀଟିରେ ଦୁଇଜଣ ଗଣିତଜ୍ଞଙ୍କ ନାମ ସମାନ ମର୍ଯ୍ୟାଦାର ସହ ଉଚ୍ଚାରଣ କରାଯାଇପାରିବ ନାହିଁ । ଭଦ୍ରତା ଖାତିରରେ ହାର୍ଡି ରାମାନୁଜନଙ୍କ ବିଷୟରେ ଯାହାବି କହିଛନ୍ତି ବା ଲେଖିଛନ୍ତି କେଉଁଠି ହେଲେ ଏ ଦୁଇଜଣଙ୍କ କଥା ଉଲ୍ଲେଖ କରିନାହାନ୍ତି । ଇତି ମଧ୍ୟରେ ବହୁ ବର୍ଷ ତଳୁ ଦୁଇଜଣଯାକ ଇହଧାମ ତ୍ୟାଗ କରି ସାରିଲେଣି । ତେଣୁ ବର୍ତ୍ତମାନ ସତ୍ୟ ଉନ୍ମୋଚନର ବେଳ । କଥାଟା ହେଲା ଯେ ହାର୍ଡି ପ୍ରଥମ ବିଖ୍ୟାତ ଗଣିତଜ୍ଞ ନୁହଁନ୍ତି ଯାହାଙ୍କ ପାଖକୁ ରାମାନୁଜନ ତାଙ୍କ କାମ ସବୁ ପଠାଇଥିଲେ । ହାର୍ଡିଙ୍କ ପୂର୍ବରୁ ସେ ଦୁଇଜଣଙ୍କ ନିକଟକୁ ତାଙ୍କ କାମ ସବୁ ପଠାଇଥିଲେ । ଉଭୟ ଇଂରେଜ ଲୋକ । ଉଭୟ ଥିଲେ ସର୍ବୋଚ୍ଚ ବୃତ୍ତିଗତ ମାନର ଅଧିକାରୀ । ଦୁଇଜଣଯାକ ବିନା ମନ୍ତବ୍ୟରେ ରାମାନୁଜନଙ୍କ ପାଣ୍ଡୁଲିପି ସବୁ ଫେରାଇ

ଦେଇଥିଲେ । ରାମାନୁଜନଙ୍କ ଖ୍ୟାତି ଯେତେବେଳେ ବ୍ୟାପିବାରେ ଲାଗିଲା ସେତେବେଳେ ଏହି ଦୁଇ ଜଣ ରାମାନୁଜନଙ୍କ ବିଷୟରେ କ'ଣ କହିଥିଲେ ବା ନକହିଥିଲେ ତା' ଉପରେ ଇତିହାସ ଗୁରୁତ୍ୱ ଦେଇଥିବ କି ଦେବ ବୋଲି ମୁଁ ଭାବୁ ନାହିଁ ।

ଯାହାବି ହେଉ, ଠିକ୍ ତା'ର ପରଦିନ ହାର୍ଡି ତାଙ୍କ କାମରେ ଲାଗି ପଡିଲେ । ସେ ନିଷ୍ପତ୍ତି ନେଲେ ଯେ ରାମାନୁଜନଙ୍କୁ ଇଂଲଣ୍ଡ ଆଣିବାକୁ ପଡିବ । ଅର୍ଥ ଗୋଟିଏ ବଡ଼ ସମସ୍ୟା ନଥିଲା । ଟ୍ରିନିଟି ସାଧାରଣତଃ ଅଣପାରମ୍ପରିକ ପ୍ରତିଭାମାନଙ୍କୁ ସହାୟତା ଯୋଗାଇବାକୁ ଆଗେଇ ଆସିଥାଏ । (କିଛି ବର୍ଷ ପରେ କାପିଜ୍ୱାଙ୍କ କ୍ଷେତ୍ରରେ ମଧ କଲେଜ ଠିକ୍ ସେୟା କରିଥିଲା) । ଥରେ ହାର୍ଡି ନିଷ୍ପତ୍ତି ନେଇ ସାରିବା ପରେ ଆଉ କୌଣସି ମାନବୀୟ ଶକ୍ତି ରାମାନୁଜନଙ୍କ ଇଂଲଣ୍ଡ ଆସିବାରେ ବାଧା ସୃଷ୍ଟି କରି ପାରି ନଥାନ୍ତା । ସେମାନଙ୍କର କେବଳ ଆବଶ୍ୟକ ଥିଲା କିଛି ଐଶ୍ୱରୀୟ ସହାୟତା ।

ଜଣା ପଡିଲା ଯେ ରାମାନୁଜନ ମାଡ୍ରାସରେ ଜଣେ ଗରିବ କିରାଣୀ ଥିଲେ । ବର୍ଷକୁ ମାତ୍ର କୋଡିଏ ପାଉଣ୍ଡ ଦରମାରେ ନିଜ ସ୍ତ୍ରୀଙ୍କ ସହ ରହୁଥିଲେ । କିନ୍ତୁ ସେ ନୈଷ୍ଠିକ ବ୍ରାହ୍ମଣ ଥିଲେ । ଧାର୍ମିକ ରୀତିନୀତି ପାଳନରେ ସେ ଖୁବ୍ କଠୋର ଥିଲେ । ତାଙ୍କ ସହିତ ରହୁଥିବା ତାଙ୍କ ମା'ତ ଆହୁରି କଠୋର ଥିଲେ । ଧର୍ମର ନିୟମ ଭାଙ୍ଗି ରାମାନୁଜନ ଯେ ସାତ ସମୁଦ୍ର ପାରିହୋଇ ଇଂଲଣ୍ଡ ଆସିବେ ସେ କଥା ଅସମ୍ଭବ ପ୍ରାୟ ଲାଗିଲା । ସୌଭାଗ୍ୟକୁ ତାଙ୍କ ମା'ଙ୍କର ଠାକୁରାଣୀ ନମକ୍କଲଙ୍କ ଠାରେ ଥିଲା ପ୍ରଗାଢ଼ ବିଶ୍ୱାସ । ଦିନେ ସକାଳେ ସେ ଗୋଟିଏ ଚମକପ୍ରଦ ଘୋଷଣାଟିଏ କଲେ । ଗତ ରାତିରେ ତାଙ୍କ ପୁଅ ଗୋଟିଏ ବଡ ହଲରେ ଦଳେ ଗୋରା ଲୋକଙ୍କ ଗହଣରେ ବସି ଥିବାର ସ୍ୱପ୍ନରେ ଦେଖିଲେ ଓ ଠାକୁରାଣୀ ତାଙ୍କୁ ନିଜ ପୁଅର ଜୀବନର ଉଦ୍ଦେଶ୍ୟ ଚରିତାର୍ଥ ହେବାରେ ପ୍ରତିବନ୍ଧକ ନ ହେବା ପାଇଁ ଆଦେଶ ଦେବା କଥା କହିଲେ । ରାମାନୁଜନଙ୍କ ଭାରତୀୟ ଜୀବନୀକାରଙ୍କ ମତରେ ଏହା ଥିଲା ସମସ୍ତଙ୍କ ପାଇଁ ଏକ ବିରାଟ ଆଶ୍ଚର୍ଯ୍ୟପ୍ରଦ ଆଶ୍ୱାସନା ।

୧୯୧୪ ରାମାନୁଜନ ଇଂଲଣ୍ଡରେ ପହଞ୍ଚିଲେ । ହାର୍ଡି ଲକ୍ଷ୍ୟକଲେ (ଯଦିଓ ଏ ବିଷୟରେ ମୁଁ ତାଙ୍କ କଥାରେ ବିଶେଷ ବିଶ୍ୱାସ ରଖି ପାରିବି ନାହିଁ) ଯେ ସେ ଜାତିଗତ ନିଷେଧକୁ ଅବମାନନା କରିବାରେ ବିଶେଷ କୁଣ୍ଠିତ ନଥିଲେ । ବହୁଦେବଦେବୀଙ୍କ ଉପରେ ସାଧାରଣ ବିଶ୍ୱାସ ବ୍ୟତୀତ ଧାର୍ମିକ ତତ୍ତ୍ୱ ଉପରେ ତାଙ୍କର ସେପରି କିଛି ଅତ୍ୟଧିକ ବିଶ୍ୱାସ ନଥିଲା । ହୁଏତ ସେପରି ଏକ ହାଲୁକା ଭକ୍ତିଭାବ ହାର୍ଡିଙ୍କର ମଧ

ଥିଲା । କିନ୍ତୁ ରାମାନୁଜନଙ୍କର ଧାର୍ମିକ ରୀତିନୀତି ଉପରେ ନିଷ୍ଠିତ ବିଶ୍ୱାସ ଥିଲା । ତାଙ୍କୁ ଟ୍ରିନିଟି କଲେଜରେ ରହିବାର ସୁବିଧା କରାଯିବା ସହ ଟ୍ରିନିଟିର ଉଚ୍ଚ ଆଦବକାଇଦାର କୌଣସି କଟକଣା ତାଙ୍କ ଉପରେ ଲଦି ଦିଆଯାଇ ନଥିଲା । ହାର୍ଡିଙ୍କ କହିବା ଅନୁଯାୟୀ ସେ ପ୍ରତ୍ୟହ କୁର୍ତ୍ତାପାଇଜାମା ପିନ୍ଧୁଥିଲେ । ନିଜ ରୁମରେ ହିଁ ଅନଭ୍ୟସ୍ତ ଲୋକ ଭଳି କଷ୍ଟେମଷ୍ଟେ ରୋଷେଇ କାମ ସବୁ କରୁଥିଲେ । ଗରିବର୍ଷ ଭିତରେ ସେ ଟ୍ରିନିଟିର ଫେଲୋ ହେବାର ସୌଭାଗ୍ୟ ଲାଭ କଲେ ।

ହାର୍ଡି ଓ ରାମାନୁଜନଙ୍କ ସମ୍ପର୍କ ବେଶ ମର୍ମସ୍ପର୍ଶୀ ଥିଲା । ହାର୍ଡି କେବେ ଭୁଲୁନଥିଲେ ଯେ ସେ ଜଣେ ଜିନିୟସଙ୍କ ସାନିଧରେ ଅଛନ୍ତି । କିନ୍ତୁ ଜିନିୟସ ଜଣକ ଗଣିତର ହୋଇମଧ ଅଣତାଲିମ ପ୍ରାପ୍ତ ଥିଲେ । ରାମାନୁଜନ ମାଡ୍ରାସ ବିଶ୍ୱବିଦ୍ୟାଳୟ ଯାଇ ପାରିଲେ ନାହିଁ କାରଣ ସେ ମାଟ୍ରିକ୍ୟୁଲେସନ ପରୀକ୍ଷାରେ ଇଂରାଜୀରେ ଫେଲ ହୋଇଥିଲେ । ହାର୍ଡିଙ୍କ କହିବା ଅନୁସାରେ ସେ ଖୁବ୍ ଅମାୟିକ ଓ ସରଳ ସ୍ୱଭାବର ଥିଲେ । ଅବଶ୍ୟ ଗଣିତ ଛଡା ଅନ୍ୟାନ୍ୟ ବିଷୟରେ ହାର୍ଡି ଯାହା ବେଳେବେଳେ କହନ୍ତି ସେ ସବୁ ସେ ଭଲ ଭାବରେ ଧରି ପାରିନ୍ତି ନାହିଁ । ସେ କେବଳ ଜଣେ ସାଙ୍ଗଙ୍କ କଥା ଶୁଣିଲା ଭଳି ହସ ହସ ମୁହଁରେ ଧୈର୍ଯ୍ୟର ସହିତ ସବୁ ଶୁଣିଯାଆନ୍ତି । ଏପରିକି ଗଣିତ ଆଲୋଚନା ବେଳେ ମଧ ଦୁହିଁଙ୍କ ମଧରେ ଥିବା ଶିକ୍ଷାଗତ ପାର୍ଥକ୍ୟ ସହ ବୁଝାମଣା କରିବାକୁ ପଡୁଥିଲା । ରାମାନୁଜନ ନିଜେନିଜେ ଯାହା କିଛି ପଢ଼ିଥିଲେ । ଆଧୁନିକ ଗଣିତର କଠୋର ନିୟମାବଳୀ କିଛି ଜାଣି ନଥିଲେ । କହିବାକୁ ଗଲେ ଗାଣିତିକ ପ୍ରମାଣ କ'ଣ ତାଙ୍କୁ ଜଣା ନଥିଲା । ଥରେ ଏକ ଅସତର୍କ ମୁହୁର୍ତ୍ତରେ ଖାମ ଖିଆଲି ଭାବରେ ହାର୍ଡି ଲେଖିଦେଇଥିଲେ ଯେ ରାମାନୁଜନ ଯଦି ଅଧିକ ଶିକ୍ଷିତ ହୋଇଥାଆନ୍ତେ ସେହି ଅନୁପାତରେ ସେ କମ୍ ରାମାନୁଜନ ହୋଇ ବାହାରିଥାଆନ୍ତେ । ଏପରି ମୁହୁର୍ତ୍ତ ଯେହେତୁ ହାର୍ଡିଙ୍କର ପ୍ରକୃତି ବିରୁଦ୍ଧ, ସେ ପଛରେ ସ୍ୱୀକାର କରିଥିଲେ ଯେ ନିଜ ମନ୍ତବ୍ୟଟି ସମ୍ପୂର୍ଣ୍ଣ ଅର୍ଥହୀନ । ବରଂ ରାମାନୁଜନ ଯଦି ଅଧିକ ଶିକ୍ଷାପ୍ରାପ୍ତ ହୋଇଥାଆନ୍ତେ ତେବେ ତାଙ୍କର ପ୍ରତିଭା ଅଧିକ ପ୍ରଭାଦୀପ୍ତ ହୋଇଥାଆନ୍ତା । ସେଥିପାଇଁ ରାମାନୁଜନଙ୍କୁ ହାର୍ଡି ଗଣିତର କିଛି ଆବଶ୍ୟକୀୟ ମୁଖ୍ୟପାଠ ପଢ଼ାଇଥିଲେ ସତେ ଯେପରି ରାମାନୁଜନ ୱିଞ୍ଚେଷ୍ଟରର ଜଣେ ଛାତ୍ର । ହାର୍ଡିଙ୍କ ଭାଷାରେ ଏହା ତାଙ୍କ ଜୀବନର ଅନ୍ୟତମ ଅନନ୍ୟ ଅନୁଭୂତି ଥିଲା । ଭାବି ହୁଏ ନାହିଁ ଯେ ଜଣେ ଗଭୀରତମ ଅନ୍ତର୍ଦୃଷ୍ଟି ସମ୍ପନ୍ନ ଅଥଚ ଆଧୁନିକ ଗଣିତର ଦୁଆର ମାଡିନଥିବା ଜଣେ ଗଣିତଜ୍ଞଙ୍କୁ ଆଧୁନିକ ଗଣିତର ପାଠ ସବୁ କିଭଳି ଲାଗିଥିବ ସତେ !

ଯାହାହେଉ, ଉଭୟ ହାର୍ଡି ଓ ରାମାନୁଜନ ସର୍ବୋଚ୍ଚଶ୍ରେଣୀୟ ପାଞ୍ଚଟି ସନ୍ଦର୍ଭ ପ୍ରସ୍ତୁତ କଲେ । ଏଗୁଡିକରେ ହାର୍ଡିଙ୍କର ସର୍ବଶ୍ରେଷ୍ଠ ବୌଦ୍ଧିକ ମୌଳିକତା ଦେଖିବାକୁ ମିଳେ (ହାର୍ଡି-ଲିଟଲଉଡ୍‌ଙ୍କ ସହକାର୍ଯ୍ୟଠାରୁ ଏହି ସହକାର୍ଯ୍ୟ ବିଷୟରେ ଅଧିକ ଜାଣିବାକୁ ମିଳେ) । ଅନ୍ତତଃ ଥରକ ପାଇଁ ଉଦାରତା ଓ ସୃଜନାତ୍ମକ ଉଦ୍‌ଯୋଗ ପୂର୍ଣ୍ଣମାତ୍ରାରେ ଫଳପ୍ରସୂ ହେଲା ।

ଏହା ମାନବିକ ସଦ୍‌ଗୁଣର ଏକ ଗାଥା । ଥରେ ମଣିଷ ଭଲ ରାସ୍ତା ଧରିଲେ ସେ ଆଗକୁ ଆଗକୁ ଅଧିକରୁ ଅଧିକ ଭଲ ବାଟରେ ଚାଲିଥାଏ । ଏହା ଏକ ଅତ୍ୟନ୍ତ ଆନନ୍ଦର କଥା ଯେ ଇଂଲଣ୍ଡ ରାମାନୁଜନଙ୍କୁ ଯେତେ ସମ୍ଭବ ସେତେ ସମ୍ମାନ ଦେଇଛି । ରୟାଲ ସୋସାଇଟି ତାଙ୍କୁ ତିରିଶ ବର୍ଷ ବୟସରେ ଫେଲୋ କରିଛି (ଜଣେ ଗଣିତଜ୍ଞ ପାଇଁ ମଧ୍ୟ ଏତେ କମ୍ ବୟସରେ ଏହି ସମ୍ମାନ ମିଳିବା ଅସ୍ୱାଭାବିକ) । ଟ୍ରିନିଟି ମଧ୍ୟ ତାଙ୍କୁ ସେହିବର୍ଷ ଫେଲୋ ଭାବରେ ଗ୍ରହଣ କଲା । ଏହି ସବୁ ସମ୍ମାନ ପାଇବାରେ ସେ ହେଲେ ପ୍ରଥମ ଭାରତୀୟ । ସେ ମଧ୍ୟ ଅମାୟିକ କୃତଜ୍ଞତା ପ୍ରଦର୍ଶନ କଲେ । କିନ୍ତୁ ଅଳ୍ପଦିନ ଭିତରେ ସେ ରୋଗାକ୍ରାନ୍ତ ହୋଇ ପଡିଲେ । ସେତେବେଳର ପ୍ରଥମ ପୃଥିବୀ ମହାଯୁଦ୍ଧକାଳୀନ ପରିସ୍ଥିତିରେ ଅନ୍ୟ କୌଣସି ସ୍ୱାସ୍ଥ୍ୟକର ସ୍ଥାନକୁ ତାଙ୍କୁ ପଠାଇବା ସମ୍ଭବ ହେଲା ନାହିଁ ।

ସେ ପୁଟନୀ ଚିକିତ୍ସାଳୟରେ ରୋଗଶଯ୍ୟାରେ ପଡିଥିବା ବେଳେ ହାର୍ଡି ତାଙ୍କୁ ଦେଖିବାକୁ ଯାଉଥିଲେ । ଥରକର କଥା । ଟ୍ୟାକ୍ସି ନମ୍ବରକୁ ନେଇ, ହାର୍ଡି ରାମାନୁଜନଙ୍କ ରୁମକୁ ପଶିଯାଇ କଥା ଆରମ୍ଭ କରିବା ବାହାନାରେ କହିଲେ, "ମୋର ଯାହା ମନେ ପଡୁଛି ମୋ ଟ୍ୟାକ୍ସି ନମ୍ବର ଥିଲା ୧୭୨୯ । ଅନାକର୍ଷକ ସଂଖ୍ୟାଟିଏ ।" ରାମାନୁଜନ ସାଙ୍ଗେ ସାଙ୍ଗେ ଉତ୍ତର ଦେଲେ, "ନା, ହାର୍ଡି, ନା ଏହା ଗୋଟିଏ ବିଶେଷ ଆକର୍ଷଣୀୟ ସଂଖ୍ୟା । ଏହା ହେଉଛି ସବୁଠାରୁ ସାନ ସଂଖ୍ୟା ଯାହାକୁ ଦୁଇଟି ଉପାୟରେ ଦୁଇଟି ସଂଖ୍ୟାର ଘନଫଳର ସମଷ୍ଟି ଭାବରେ ପ୍ରକାଶ କରି ହେବ ।"

ଏହି ବାର୍ତ୍ତାଳାପକୁ ହାର୍ଡି ଲେଖି ରଖିଥିଲେ । ହାର୍ଡିଙ୍କ ଭଳି ସତ୍ୟନିଷ୍ଠ ପ୍ରକୃତିର ଲୋକଙ୍କ ଲେଖା ଉପରେ ସନ୍ଦେହର ପ୍ରଶ୍ନବାଚୀ ଉଠାଯାଇନପାରେ । ତାପରେ ଏପରି ଗୂଢ଼ ଗଣିତର କଥାକୁ ଅନ୍ୟ କେହିବି ମନରୁ ପାଞ୍ଚି କହିପାରିବ ନାହିଁ ।

ରାମାନୁଜନ ଯକ୍ଷ୍ମାରୋଗରେ ଆକ୍ରାନ୍ତ ହୋଇ ମାଡ୍ରାସକୁ ଫେରି ମୃତ୍ୟୁବରଣ କଲେ ଯୁଦ୍ଧ ସରିବାର ଦୁଇବର୍ଷ ପରେ । ହାର୍ଡି ବିଖ୍ୟାତ ଗଣିତଜ୍ଞମାନଙ୍କର ସ୍ମରଣ

କରିବାକୁ ଯାଇ "ଆତ୍ମଚିନ୍ତନ"ରେ ଲେଖିଛନ୍ତି, "ଗାଲୟ ଏକୋଇଶ ବର୍ଷରେ ମଲେ । ଆବେଲ ସତେଇଶ ବର୍ଷରେ, ରାମାନୁଜନ ତେତିଶ ବର୍ଷରେ ଓ ରିମାଁ ଚାଳିଶ ବର୍ଷରେ... । ମୁଁ ଗୋଟିଏ ହେଲେ ଉଦାହରଣ ପାଉନାହିଁ ଯେଉଁଠି ଚାଳିଶି ବର୍ଷରୁ ଅଧିକ ବୟସ୍କ ଗଣିତଜ୍ଞ ଏକ ଉଲ୍ଲେଖନୀୟ ଗାଣିତିକ ଅଗ୍ରଗତି ହାସଲ କରିବାରେ ସମର୍ଥ ହୋଇଛନ୍ତି ।"

ରାମାନୁଜନଙ୍କ ସହ ଗଣିତ ଗବେଷଣାରେ ନିବିଷ୍ଟ ରହି ନଥିଲେ ୧୯୧୪ରୁ ୧୯୧୮ ଯୁଦ୍ଧ ସମୟ ହାର୍ଡିଙ୍କ ପାଇଁ ଅଧିକ ନୈରାଶ୍ୟଭରା ହୋଇଥାଆନ୍ତା । ତଥାପି ନୈରାଶ୍ୟ କିଛି କମ୍ ନଥିଲା । ଏହା ଏଭଳି ଏକ କ୍ଷତ ଛାଡିଗଲା ଯାହା ଦ୍ୱିତୀୟ ବିଶ୍ୱଯୁଦ୍ଧରେ ହିଁ ଆତ୍ମପ୍ରକାଶ କଲା । ହାର୍ଡି ଜୀବନସାରା ଅଣପାରମ୍ପରିକ ମତବାଦୀ ଥିଲେ । ଯଦିଓ ତାଙ୍କ ଅଣପାରମ୍ପରିକ ମତବାଦ ନୂଆ ଶତାବ୍ଦୀର ନୂଆ ଜ୍ଞାନାଲୋକ ଦ୍ୱାରା କିଛି ମାତ୍ରାରେ ପ୍ରଭାବିତ ହୋଇଥିଲା । ଆମ ସମୟରେ ବାସ୍ତବକ୍ଷେତ୍ରରେ ଉପଲବ୍ଧ ପରିବେଶ ଠାରୁ ଏହି ମତବାଦ ଅଧିକ କୋମଳ ଓ ସରଳ ପରିବେଶର ଅପେକ୍ଷା ରଖୁଥିଲା ଭଳି ଲାଗୁଥିଲା ।

ତାଙ୍କର ଅନେକ ସାଙ୍ଗଙ୍କ ଭଳି ହାର୍ଡିଙ୍କର ଜର୍ମାନୀ ପ୍ରତି ବିଶେଷ ଦୁର୍ବଳତା ଥିଲା । ଏହା ସର୍ବମାନ୍ୟ ଯେ ଉନବିଂଶ ଶତାବ୍ଦୀର ଜର୍ମାନୀ ପୃଥିବୀର ଏକ ବିରାଟ ଶୈକ୍ଷିକ ପ୍ରଭାବ ଭାବରେ ଆବିର୍ଭୂତ ହୋଇଥିଲା । ଜର୍ମାନୀର ବିଶ୍ୱବିଦ୍ୟାଳୟ ଗୁଡିକ ହିଁ ଗବେଷଣାର ଅର୍ଥ ପୂର୍ବ ୟୁରୋପର ଦେଶ, ରୁଷିଆ ତଥା ଯୁକ୍ତରାଷ୍ଟ୍ର ଆମେରିକାକୁ ଶିଖାଇଥିଲେ । ହାର୍ଡି ଜର୍ମାନୀର ଦର୍ଶନଶାସ୍ତ୍ର ବା ସାହିତ୍ୟ ପ୍ରତି ବିଶେଷ ଆକୃଷ୍ଟ ନଥିଲେ । ତାଙ୍କର ରୁଚି ସେସବୁ ତୁଳନାରେ ଆହୁରି ପୁରାତନ ମୌଳିକ ରଚନାଦିରେ ଥିଲା । କିନ୍ତୁ ଜର୍ମାନୀର ସଂସ୍କୃତି ତଥା ସମାଜକଲ୍ୟାଣ ବ୍ୟବସ୍ଥା ଅନେକ ଦୃଷ୍ଟିରୁ ତାଙ୍କ ନିଜ ଦେଶ ଠାରୁ ଉତ୍କୃଷ୍ଟ ଥିଲାବୋଲି ସେ ଭାବୁଥିଲେ ।

ଆଇନଷ୍ଟାଇନଙ୍କ ଭଳି ହାର୍ଡିଙ୍କର ରାଜନୈତିକ ବାସ୍ତବତା ବିଷୟରେ ସେତେ ବଳିଷ୍ଠ ଧାରଣା ନଥିଲା । ୱିଲହେମ ଶାସନାଧୀନ ଜର୍ମାନୀ ସହ ତାଙ୍କର ପ୍ରତ୍ୟକ୍ଷ ପରିଚୟ ନଥିଲା । ଯଦିଓ ସେ ତିଳେମାତ୍ର ଅହଙ୍କାରୀ ନଥିଲେ ତଥାପି ଜଣେ ରକ୍ତମାଂସଧାରୀ ମଣିଷ ଭାବରେ ନିଜ ଦେଶ ତୁଳନାରେ ଜର୍ମାନୀରେ ଅଧିକ ପ୍ରଶଂସିତ ହେବାର ନିଶ୍ଚୟ ଖୁବ୍ ଆତ୍ମସନ୍ତୋଷ ଲାଭ କରିଥିବେ । ଏହି ବିଷୟରେ ଗୋଟିଏ ସୁନ୍ଦର ଉପାଖ୍ୟାନ ଅଛି । ଜର୍ମାନୀର ଶ୍ରେଷ୍ଠ ଗଣିତଜ୍ଞମାନଙ୍କ ମଧ୍ୟରୁ ଜଣେ ହେଲେ

ହିଲବର୍ଟ । ସେ କେମିତି ଶୁଣିବାକୁ ପାଇଲେ ଯେ ଟ୍ରିନିଟିରେ (ପ୍ରକୃତରେ ହ୍ୱେୱେଲସ କୋର୍ଟ) ହାର୍ଡିଙ୍କୁ ରହିବା ପାଇଁ ଯେଉଁ ରୁମ୍ ଦିଆଯାଇଛି ତାହା ସେପରି ଉନ୍ନତ ମାନର ନୁହେଁ । ହିଲବର୍ଟ ସାଙ୍ଗେ ସାଙ୍ଗେ ଟ୍ରିନିଟର 'ମାଷ୍ଟର'ଙ୍କୁ ଲେଖିଲେ ଯେ ହାର୍ଡି କେବଳ ଟ୍ରିନିଟି ନୁହେଁ ସମଗ୍ର ଇଂଲଣ୍ଡର ସର୍ବଶ୍ରେଷ୍ଠ ଗଣିତଜ୍ଞ । ତେଣୁ ତାଙ୍କୁ ଟ୍ରିନିଟିର ସର୍ବୋତ୍ତମ ରହିବା ଜାଗା ମିଳିବା ଉଚିତ୍ ।

ତେଣୁ ରସେଲ ଓ କେମ୍ବ୍ରିଜର ବୁଦ୍ଧିଜିବୀ ଗୋଷ୍ଠୀ ଭଳି ହାର୍ଡି ମଧ୍ୟ ଯୁଦ୍ଧ ହେବା ସପକ୍ଷରେ ନଥିଲେ । ଏଥି ସହିତ ଇଂରେଜ ରାଜନେତାମାନଙ୍କ ପ୍ରତି ଥିବା ତାଙ୍କର ଅସ୍ଥିମଜ୍ଜାଗତ ଘୃଣା ଦୃଷ୍ଟିରୁ ସେ ସବୁବେଳେ ଭାବୁଥିଲେ ଯେ ଅଧିକ ଦୋଷ ଇଂରେଜ ପକ୍ଷରେ ହିଁ ଥିଲା । ତା ସତ୍ତ୍ୱେ ଯୁଦ୍ଧକାଳୀନ ସାମରିକ ସେବାରେ କାମ କରିବା ବିରୁଦ୍ଧରେ ବିବେକାନୁମୋଦିତ ଆପତ୍ତି ତାଙ୍କର କିଛି ନଥିଲା । ନିଜ ବୌଦ୍ଧିକ ଶୃଙ୍ଖଳା ସେଭଳି ଆପତ୍ତି ଉଠିବାକୁ ପ୍ରଶୟ ଦେଉନଥିଲା । ସେ ଡର୍ବି ଯୋଜନାରେ ଯୋଗଦେବାକୁ ସ୍ୱଇଚ୍ଛା ପ୍ରକାଶ କରିଥିଲେ ମଧ୍ୟ ଡାକ୍ତରୀ ପରୀକ୍ଷାରେ କଟିଯାଇଥିଲେ । ଟ୍ରିନିଟିରେ କିନ୍ତୁ ସେ ଏକରକମ ଏକ ଘରକିଆ ହୋଇଯାଇଥିଲେ । କାରଣ ଟ୍ରିନିଟିର ଅଧିକାଂଶ ଲୋକ ଖୋଲାଖୋଲି ଯୁଦ୍ଧପ୍ରବଣତା ପ୍ରଦର୍ଶନ କରୁଥିଲେ ।

ଜଟିଳ ଉତ୍ୟକ୍ତ ବାତାବରଣ ଭିତରେ ରସେଲଙ୍କୁ ଅଧ୍ୟାପକ ପଦବୀରୁ ବହିଷ୍କାର କରାଗଲା (ପଚିଶବର୍ଷ ପରେ ଦ୍ୱିତୀୟ ମହାଯୁଦ୍ଧ ସମୟରେ ନିଜକୁ ସାନ୍ତ୍ୱନା ଦେବାକୁ ଯାଇ ହାର୍ଡି ଏହି ଘଟଣାର ଏକ ବିସ୍ତୃତ ବିବରଣୀ ଲେଖିଥିଲେ) । ହାର୍ଡିଙ୍କର ଘନିଷ୍ଠ ବନ୍ଧୁମାନେ ଯୁଦ୍ଧ କ୍ଷେତ୍ରରେ ଥିଲେ । ଲିଟିଲଉଡ୍ ରୟାଲ କମାଣବାହିନୀରେ ସେକେଣ୍ଡ ଲେଫ୍ଟନାଣ୍ଟ ଭାବରେ କ୍ଷେପଣାସ୍ତ୍ର ବିଭାଗରେ କାମ କରୁଥିଲେ । ତାଙ୍କର ଖୁସମିଜାଜିଆ ଉଦାସୀନତା ଯୋଗୁ ଯୁଦ୍ଧ ଚାରିବର୍ଷଯାକ ତାଙ୍କୁ ସେହି ସେକେଣ୍ଡ ଲେଫ୍ଟନାଣ୍ଟ ପଦବୀରେ ହିଁ ରଖାଗଲା । ହାର୍ଡିଙ୍କ ସହ ତାଙ୍କର ଗବେଷଣା ଯଦିଓ ପୂରାପୂରି ବନ୍ଦ ହୋଇ ନଥିଲା କିନ୍ତୁ ବାଧାପ୍ରାପ୍ତ ହୋଇଥିଲା ନିଶ୍ଚୟ । ଭୀଷଣ ବାଦାନୁବାଦ ଓ ତିକ୍ତତା ଭରା କଲେଜ ପରିବେଶରେ ରାମାନୁଜନଙ୍କ ସହ ଗବେଷଣା ହିଁ ଥିଲା ହାର୍ଡିଙ୍କ ପାଇଁ ଏକମାତ୍ର ସାନ୍ତ୍ୱନା ।

ମତେ କିନ୍ତୁ ଲାଗେ ଯେ ବୋଧହୁଏ ପ୍ରଥମ ଥର ପାଇଁ ସେ ତାଙ୍କ ସହକର୍ମୀମାନଙ୍କ ପ୍ରତି ଯଥୋଚିତ ସମ୍ମାନ ଦେବାରେ ତ୍ରୁଟି କରିଥିଲେ । କିଛି ଲୋକ ପାଗଳପ୍ରାୟ ଯୁଦ୍ଧଖୋର ଥିଲେ ସତ; ଯୁଦ୍ଧ ପରିବେଶରେ ସାଧାରଣତଃ ଯେପରି ଦେଖାଯାଏ ।

କିନ୍ତୁ ଆଉ ବେଶ୍ କିଛି ଲୋକ ବହୁ ସମୟ ଧରି ମନ ଭିତରେ ଖୁବ୍ ଯନ୍ତ୍ରଣା ଅନୁଭବ କରୁଥିଲେ ଓ ସାମାଜିକ ଶାଳୀନତା ରକ୍ଷା କରିବାରେ ତ୍ରୁଟି କରୁନଥିଲେ । ସବୁଭିତରେ ଏକଥା ଭୁଲିବା ଉଚିତ ନୁହେଁ ଯେ ସେହିମାନଙ୍କ ଶୈକ୍ଷିକ ସାଧୁତା ବଳରେ ହିଁ ରାମାନୁଜନ ଟ୍ରିନିଟିର ଫେଲୋ ଭାବେ ନିର୍ବାଚିତ ହେଲେ ଯଦିଓ ରାମାନୁଜନ ହାର୍ଡିଙ୍କ ପ୍ରାର୍ଥୀବୋଲି ସମସ୍ତେ ଜାଣିଥିଲେ ଓ ନିର୍ବାଚକମାନଙ୍କ ମଧ୍ୟରୁ କିଛି ଲୋକଙ୍କ ସହ ହାର୍ଡିଙ୍କର କେବଳ ବାଚନିକ ସମ୍ପର୍କ ହିଁ ଥିଲାବେଳେ ଅନ୍ୟମାନଙ୍କ ସହ ସେତକ ବି ନଥିଲା ।

ସବୁକିଛି ସତ୍ତ୍ୱେ ହାର୍ଡି ବହୁତ ବିଗିଡି ଯାଇଥିଲେ । ସୁଯୋଗ ମିଳିବା ମାତ୍ରେ ସେ କେମ୍ବ୍ରିଜ ଛାଡିଦେଲେ । ୧୯୧୯ରେ ଅକ୍ସଫୋର୍ଡରେ ତାଙ୍କୁ ଗୋଟେ ପ୍ରଫେସର ପଦ ଯଚ୍ଚଗଲା । ସେ ତତ୍କ୍ଷଣାତ୍ ତାଙ୍କ ଜୀବନର ସବୁଠାରୁ ଖୁସିର ସମୟ ପାଇଗଲେ । ସେ ତ ଏମିତି ରାମାନୁଜନ ଓ ଲିଟେଲଉଡ୍ଙ୍କ ସହିତ ଅତ୍ୟନ୍ତ ଉଚ୍ଚକୋଟିର କାମ କରିଥିଲେ କିନ୍ତୁ ବର୍ତ୍ତମାନ ଲିଟିଲଉଡଙ୍କ ସହ ଗବେଷଣା ପୂର୍ଣ୍ଣ ଶକ୍ତି ପାଇଗଲା । ନିୟୁଟନଙ୍କ ଭାଷାରେ କହିଲେ ହାର୍ଡି ବର୍ତ୍ତମାନ "ନୂଆ ଉଦ୍ଭାବନର ଚରମୋତ୍କର୍ଷ ମାନସିକ ସ୍ଥିତି"ର ସୁଯୋଗ ପାଇଗଲେ । ସେତେବେଳେକୁ ତାଙ୍କ ବୟସ ଚାଳିଶରୁ ଅଳ୍ପ ଅଧିକ । ଜଣେ ଗଣିତଜ୍ଞ ପକ୍ଷରେ ଏପରି ସୃଜନାତ୍ମକ ଅବସ୍ଥା ଅସ୍ୱାଭାବିକ ଭାବେ ବିଳମ୍ବିତ ଥିଲା ।

ସୃଜନଶୀଳତାର ଏହି ବିଳମ୍ବିତ ଉଚ୍ଛ୍ୱାସ ତାଙ୍କୁ ଅନନ୍ତ ଯୌବନର ଅନୁଭବ ଦେଲା । ଅନ୍ୟମାନଙ୍କ ତୁଳନାରେ ସେ ଏହି ଅନୁଭବକୁ ଖୁବ୍ ମହତ୍ତ୍ୱ ଦେଲେ । ସେ ଯୁବକ ସୁଲଭ ଜୀବନ କାଟୁଥିଲେ । ତାହା ଥିଲା ତାଙ୍କର ପ୍ରକୃତିଗତ । ସେ ନିୟମିତ ଟେନିସ ଖେଳୁଥିଲେ ଓ ସେଥିରେ ମଧ ଧୀରେଧୀରେ ତାଙ୍କର ନୈପୁଣ୍ୟ ବଢୁଥିଲା (ଟେନିସ୍ ଏକ ବ୍ୟୟସାପେକ୍ଷ ଖେଳ । ତାଙ୍କ ରୋଜଗାରର ବେଶ୍ ଅଂଶ ଏଥିପାଇଁ ଖର୍ଚ୍ଚ ହେଉଥିଲା) । ସେ ଆମେରିକାର ବିଶ୍ୱ ବିଦ୍ୟାଳୟଗୁଡିକୁ ଅନେକ ଥର ଗସ୍ତ କରୁଥିଲେ ଓ ଆମେରିକା ତାଙ୍କୁ ଖୁବ୍ ଭଲ ଲାଗୁଥିଲା । ସୋଭିଏତ ୟୁନିୟନ ଓ ଆମେରିକା ଦୁଇଦେଶକୁ ମୋଟାମୋଟି ସମାନଭାବରେ ଭଲ ପାଉଥିବା କତିପୟ ଇଂରେଜ ଲୋକଙ୍କ ମଧ୍ୟରୁ ସେ ଅନ୍ୟତମ । କେବଳ ତାଙ୍କ ସମୟ ନୁହେଁ ଯେକୌଣସି ସମୟକୁ ବିଚାରକୁ ନେଲେ ମଧ ସେ ବୋଧହୁଏ ଏକମାତ୍ର ଇଂରେଜ ଲୋକ ଯେ ବେସ୍‌ବଲ କମିଶନରଙ୍କୁ କୌଶଳ ସଂକ୍ରାନ୍ତୀୟ ଖେଳ ନିୟମାବଳୀର ଏକ ସଂଶୋଧନ ପ୍ରସ୍ତାବ ଉପସ୍ଥାପନ କରିଥିଲେ । ତାଙ୍କ ପାଇଁ ଓ ତାଙ୍କ ସମୟର ଅନ୍ୟ ସମସ୍ତ

ଉଦାରପନ୍ଥୀଙ୍କ ପାଇଁ ବିଂଶ ଶତାବ୍ଦୀର ତୃତୀୟ ଦଶନ୍ଧି ଥିଲା ଏକ ପ୍ରତାରଣାପୂର୍ଣ୍ଣ ପ୍ରଭାତ ଭଳି । ସେ ଧରିନେଇଥିଲେ ଯେ ଯୁଦ୍ଧର ବିଭୀଷିକାକୁ ସବୁଦିନ ପାଇଁ ଅତୀତକୁ ଠେଲି ଦିଆଯାଇଛି ।

ଅକ୍ସଫୋର୍ଡ ନିଉ କଲେଜରେ ସେ ନିଜ ଘରେ ରହିବା ଭଳି ଖୁସି ଅନୁଭବ କରୁଥିଲେ । କେମ୍ବ୍ରିଜରେ ତାଙ୍କୁ ସେଭଳି ଆନନ୍ଦ ଅନୁଭବ କେବେ ମିଳି ନଥିଲା । ଆଦରଭରା ଘରୋଇ ବାର୍ତ୍ତାଳାପର ଅକ୍ସଫୋର୍ଡ ପରିବେଶ ତାଙ୍କୁ ବେଶ୍ ସୁହାଇଲା । ସେହିଠାରେ ସେତେବେଳର ଗୋଟିଏ ଛୋଟ କଲେଜର ନିବିଡ଼ ପରିବେଶରେ ହିଁ ସେ ତାଙ୍କର ବାର୍ତ୍ତାଳାପର ଢ଼ଙ୍ଗକୁ ସମ୍ପୂର୍ଣ୍ଣତା ଦେବାରେ ସକ୍ଷମ ହେଲେ । ସେଠାରେ ଅନେକ ଲୋକ ମିଳିଗଲେ ଯେଉଁମାନେ ଖାଇବା ପରେ ତାଙ୍କୁ ଶୁଣିବାକୁ ଉତ୍କଣ୍ଠିତ ଥିଲେ । ସେମାନେ ତାଙ୍କ ଅବାଗିଆ ପ୍ରକୃତି ପ୍ରତି ଦୃଷ୍ଟି ଦେଉନଥିଲେ । ସେମାନେ ଉପଲବ୍ଧି କରୁଥିଲେ ଯେ ହାର୍ଡି କେବଳ ଜଣେ ବିଖ୍ୟାତ ବା ସଚ୍ଚୋଟ ଲୋକ ନଥିଲେ, ବେଶ୍ ମଜାଳିଆ ମଧ୍ୟ ଥିଲେ । ମଜମଜା କଥାର ଗପସପ ହେଉ ବା ପଡିଆରେ ସତସତିକା କ୍ରିକେଟ ଖେଳ ହେଉ ଯାହାବି ହାର୍ଡି କରିବାକୁ ଇଚ୍ଛା କରୁଥିଲେ ସେମାନେ ତାଙ୍କ ପ୍ରଶଂସକ ଭାବରେ ଭାଗୀଦାର ହେବାକୁ ପ୍ରସ୍ତୁତ ଥିଲେ । ଟିକିଏ ବିଘ୍ନର ରହିତ ଭାବରେ ହେଲେ ମଧ୍ୟ ଖୁବ୍ ମାନବିକବୋଧର ସହ ସେମାନେ ହାର୍ଡିଙ୍କ ପ୍ରତି ଅତ୍ୟନ୍ତ ଆଦର ପ୍ରଦର୍ଶନ କରୁଥିଲେ । ଆଗରୁ ତ ସେ ନିଶ୍ଚିତ ଭାବରେ ପ୍ରଶଂସିତ ଓ ସମ୍ମାନିତ ହେଉଥିଲେ କିନ୍ତୁ ଏଭଳି ଆଦର ସମ୍ମାନ କେବେ ବି ମିଳି ନଥିଲା ।

ତାଙ୍କ ପ୍ରକୋଷ୍ଠରେ ଲେନିନଙ୍କର ବଡ଼ ଫଟୋଟିଏ ଥିବା କଥାକୁ କେହି ଗୁରୁତ୍ୱ ଦେଉନଥିଲେ କି ଭୁଲ ବୁଝୁନଥିଲେ । ଗୁରୁତ୍ୱ ନଦେବାଟା ବରଂ ଗୋଟେ ଥଟ୍ଟା ପରିହାସର ଖୋରାକ ସାଜି ଯାଇଥିଲା । ହାର୍ଡିଙ୍କ ଅଣପାରମ୍ପରିକ ଚିନ୍ତାଧାରା ବଳିଷ୍ଠ ଥିଲେ ସୁଦ୍ଧା କିଛି ମାତ୍ରାରେ ଅସଂଗଠିତ ଥିଲା । ମୁଁ ଆଗରୁ କହିଛି ଯେ ସେ ଗୋଟିଏ ବୃତ୍ତିଧାରୀ ପରିବାରରେ ଜନ୍ମ ନେଇଥିଲେ । ତାଙ୍କର ସମଗ୍ର ଜୀବନ ଉଚ୍ଚ ମଧ୍ୟବିତ୍ତ ଶ୍ରେଣୀର ଆବହାଓ୍ୱା ମଧ୍ୟରେ କଟିଥିଲା । କିନ୍ତୁ ସେ ଜଣେ ସମ୍ଭ୍ରାନ୍ତ ଶ୍ରେଣୀର ଲୋକ ଭାବରେ ବ୍ୟବହାର କରୁଥିଲେ । ଅବଶ୍ୟ ତାଙ୍କ ନଜରରେ ସମ୍ଭ୍ରାନ୍ତ କହିଲେ ଯାହା ବୁଝାଯାଏ ସେହିଭଳି ଭାବରେ ବ୍ୟବହାର କରୁଥିଲେ କହିଲେ ହୁଏତ ଅଧିକ ଠିକ୍ ହେବ । ଏହିଭଳି କିଛି ମନୋଭାବ ସେ ତାଙ୍କ ବନ୍ଧୁ ବର୍ଟ୍ରାଣ୍ଡ ରସେଲଙ୍କ ଠାରୁ ବୋଧହୁଏ ସଂଗ୍ରହ କରିଥିଲେ । କିନ୍ତୁ ମୋଟାମୋଟି ଭାବରେ ସବୁକିଛି ଥିଲା ତାଙ୍କର ଅନ୍ତର୍ନିହିତ । ଲାଜକୁଳା ସ୍ୱଭାବର ଥିଲେ ସିନା କିନ୍ତୁ କୌଣସି ଲୋକକୁ ପାସଙ୍ଗକୁ ନେଉ ନଥିଲେ ।

ସେ କିନ୍ତୁ ଗରିବ, ଅସହାୟ ଓ ଜନ୍ମଗତ ବିଭେଦର ଶିକାର ହେଉଥିବା ଲୋକମାନଙ୍କ ସହ ଅନାୟସରେ ମିଶି ପାରୁଥିଲେ (ରାମାନୁଜନଙ୍କ ଆବିଷ୍କାର ଏହି ମନୋବୃତ୍ତିର ଭାଗ୍ୟନିର୍ଦ୍ଧାରିତ ସଙ୍କେତ ପରି ଥିଲା) । ସେ ଏହି ଲୋକମାନଙ୍କୁ "ପୃଥୁଳନିତମ୍ବଧାରୀ"ମାନଙ୍କ ଠାରୁ ବେଶୀ ପସନ୍ଦ କରୁଥିଲେ । ବର୍ଣ୍ଣନାଟା ଯେତିକି ଶରୀର ସମ୍ବନ୍ଧୀୟ ନୁହେଁ ତା'ଠୁ ବେଶୀ ମନସ୍ତତ୍ତ୍ୱ ସମ୍ବନ୍ଧୀୟ । ଯଦିଓ ଊନବିଂଶ ଶତାବ୍ଦୀରୁ ଆଡାମ୍ ସେଜଓ୍ୱିକଙ୍କ ନାଁରେ ଏକ କେମ୍ବ୍ରିଜ ପ୍ରବାଦ ଗଢି ଆସୁଛି ଯେ "ପୃଥୁଳ ନିତମ୍ବଧାରୀ ନ ହୋଇ ପୃଥିବୀରେ କେହି ସଫଳକାମ ହୋଇନାହିଁ", ହାର୍ଡିଙ୍କ ଦୃଷ୍ଟିରେ ଆତ୍ମଗର୍ବୀ, ବାହାସ୍ଫୋଟିଆ ମଧ୍ୟବିତ୍ତ ଶ୍ରେଣୀୟ ଇଂରେଜମାନେ ହିଁ ଥିଲେ "ପୃଥୁଳ ନିତମ୍ବଧାରୀ" । ଏହି ଉପାଧିଧାରୀ ଶ୍ରେଣୀ ଭିତରେ ଥିଲେ ଅଧିକାଂଶ ପାଦ୍ରୀ, ଅଧକ୍ଷ, ବିଚାରପତି ଓ ସମସ୍ତ ରାଜନୀତି କରୁଥିବା ଲୋକ । ରାଜନୀତିର ଲୋକଙ୍କ ମଧ୍ୟରେ ଲୟଡ୍ ଜର୍ଜ ହିଁ ଥିଲେ ଏକମାତ୍ର ବ୍ୟତିକ୍ରମ ।

ନିଜ ରୁଚିର ପରିଚୟ ଦେବାକୁ ଯାଇ ସେ କେବଳ ମାତ୍ର ଗୋଟିଏ ଜନସେବା ଦାୟିତ୍ୱ ଗ୍ରହଣ କରିଥିଲେ । ଦୁଇବର୍ଷ (୧୯୨୪-୨୬) ପାଇଁ ସେ ବିଜ୍ଞାନ ଶ୍ରମିକ ସଂଘର ସଭାପତି ଥିଲେ । ସେ ଉପହାସ ଛଳରେ କହୁଥିଲେ ଯେ ତାଙ୍କୁ ସଭାପତି କରିବା ଏକ ବିଚିତ୍ର ନିଷ୍ପତ୍ତି କାରଣ "ସେ ଥିଲେ ଦୁନିଆର ସବୁଠାରୁ ଅବାସ୍ତବ ବୃତ୍ତିର ସବୁଠାରୁ ବ୍ୟବହାରିକ ଜ୍ଞାନ ବିବର୍ଜିତ ଲୋକଟିଏ ।" କିନ୍ତୁ କୌଣସି ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟରେ ସେ ଏଭଳି ନଥିଲେ । ପ୍ରତି କଥାରେ ସେ ନିଜର ମତ ଓ ବ୍ୟକ୍ତିତ୍ୱ ଜାହିର କରୁଥିଲେ । ବହୁ ବର୍ଷ ତଳେ ମୁଁ ଯେତେବେଳେ ଫ୍ରାଙ୍କ କୁଜିନସଙ୍କ ସହ କାମ କରୁଥିଲି ମତେ ଏକଥା ଭାବିବାରେ ଖୁବ୍ ଆନନ୍ଦ ମିଳୁଥିଲା ଯେ ମୋର କେବଳ ଦୁଇଜଣ ବନ୍ଧୁ ଶ୍ରମିକ ସଂଘର ଆନ୍ଦୋଳନରେ କାର୍ଯ୍ୟକର୍ତ୍ତା ଭାବେ କାମ କରିଛନ୍ତି । ଜଣେ କୁଜିନସ୍ ଓ ଅନ୍ୟଜଣକ ଜି.ଏଚ୍.ହାର୍ଡି ।

ଅକ୍ସଫୋର୍ଡର ଗ୍ରୀଷ୍ମ ସମୟ ଏତେ ଆନନ୍ଦଦାୟକ ଥିଲା ଯେ କେହି ଭାବୁ ନଥିଲେ ହାର୍ଡି ପୁଣି ଥରେ କେମ୍ବ୍ରିଜକୁ ଫେରିଯିବେ ବୋଲି । ୧୯୩୧ରେ ସେ କିନ୍ତୁ ଫେରିଲେ । ମୋ ଧାରଣାରେ ତାଙ୍କ ଫେରିବା ପଛରେ ଦୁଇଟି କାରଣ ଥିଲା । ପ୍ରଥମ ଓ ପ୍ରମୁଖ କାରଣ ହେଲା ଯେ ହାର୍ଡି ଜଣେ ପ୍ରଚଣ୍ଡ ଭାବରେ ବୃତ୍ତିନିଷ୍ଠ ଲୋକ ଥିଲେ । ସେତେବେଳେ କେମ୍ବ୍ରିଜ ହିଁ ଇଂଲଣ୍ଡରେ ଗଣିତ ଗବେଷଣାର କେନ୍ଦ୍ରବିନ୍ଦୁ ଥିଲା । ତେଣୁ ବରିଷ୍ଠ ଗଣିତ ପ୍ରଫେସର ପଦବୀ ପାଇ କେମ୍ବ୍ରିଜ ଫେରିଯିବା ବୃତ୍ତି

ଦୃଷ୍ଟିରୁ ସଠିକ୍ ନିଷ୍ପତ୍ତି ଥିଲା । ଦ୍ୱିତୀୟ ଓ କିଛି ମାତ୍ରାରେ ଅସ୍ୱାଭାବିକ କାରଣଟି ହେଲା ଯେ ସେ ନିଜ ବାର୍ଦ୍ଧକ୍ୟ କଥା ମଧ୍ୟ ଭାବୁଥିଲେ । ଅକ୍ସଫୋର୍ଡ଼ ପରିବେଶ ବହୁଦୃଷ୍ଟିରୁ ଖୁବ୍ ମାନବିକତା ଭରା ତଥା ସୌହାର୍ଦ୍ଦ୍ୟପୂର୍ଣ୍ଣ ହେଲେ ମଧ୍ୟ ବୃଦ୍ଧ ଲୋକଙ୍କ ପାଇଁ ଖୁବ୍ କଠୋର । ସେ ଯଦି ନିୟୁ କଲେଜରେ ରହିଥାଆନ୍ତେ ତେବେ ସେ ବୟସାନୁସାରେ ପ୍ରଫେସର ପଦରୁ ଅବସର ଗ୍ରହଣ କରିବା ମାତ୍ରେ ତାଙ୍କୁ ତାଙ୍କ ଅଫିସ ଓ ଘର ଛାଡ଼ିବାକୁ ପଡିଥାଆନ୍ତା । କିନ୍ତୁ ଟ୍ରିନିଟିକୁ ଫେରିଗଲେ ସେ ମୃତ୍ୟୁପର୍ଯ୍ୟନ୍ତ ନିଜ କଲେଜ ପରିସରରେ ରହି ପାରିବେ । ସେଇଆ ହିଁ ସେ କଲେ ।

ସେ କେମ୍ବ୍ରିଜ ଫେରିଲାବେଳକୁ ତାଙ୍କ ପ୍ରଚଣ୍ଡ ସୃଜନଶୀଳତାର ଅପରାହ୍ନ ଓହ୍ଲାଇ ଆସୁଥାଏ । ସେତିକିବେଳେ ମୋର ତାଙ୍କ ସହ ପରିଚୟ । ସେ ବହୁତ ଖୁସି ଥାଆନ୍ତି । ସୃଜନାତ୍ମକ କାମ ମଧ୍ୟ କରି ଚାଲି ଥାଆନ୍ତି । ପୂର୍ବଭଳି ନହେଲେ ମଧ୍ୟ ସେ ଅନୁଭବ କରୁଥାଆନ୍ତି ଯେ ଦକ୍ଷତା ତଥାପି ରହିଛି । ନିୟୁ କଲେଜ ସମୟ ଭଳି ସେ ଖୁବ୍ ତେଜୀୟାନ ଥାଆନ୍ତି । ତେଣୁ ଆମେ ତାଙ୍କୁ ତାଙ୍କ ପ୍ରତିଭାର ଶୀର୍ଷବିନ୍ଦୁରେ ଭେଟିବାର ସୌଭାଗ୍ୟ ପାଇଥିଲୁ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଆମ ଭିତରେ ବନ୍ଧୁତା ବଢ଼ିଲା ପରେ ପ୍ରତି ପନ୍ଦର ଦିନରେ ଆମେ ପରସ୍ପରକୁ ରାତି ଭୋଜନ ପାଇଁ ନିମନ୍ତ୍ରଣ କରୁଥିଲୁ । ଶୀତଦିନରେ ଏହା ଏକ ନିୟମ ହୋଇଯାଇଥିଲା କହିଲେ ଚଳେ । ଖରାଦିନେ କ୍ରିକେଟ ପଡିଆରେ ପରସ୍ପରକୁ ଭେଟିବା ବି ସେହିଭଳି ଗୋଟିଏ ଅଭ୍ୟାସରେ ପରିଣତ ହୋଇଯାଇଥିଲା । କିଛି ବିଶେଷ ପରିସ୍ଥିତି ଜନିତ ବ୍ୟତିକ୍ରମ ଛାଡିଦେଲେ ସେ ପ୍ରତିଦିନ ସକାଳବେଳା ଗଣିତ ଗବେଷଣାରେ ବ୍ୟସ୍ତ ରହୁଥିଲେ । ଖରାବେଳ ଖାଇବା ପୂର୍ବରୁ ଫେନ୍ନରକୁ ଆସୁ ନଥିଲେ । ଅପରାହ୍ନରେ ଏକ ସର୍ପିଳ ରାସ୍ତାଟି ଦେଇ ଫେନ୍ନରକୁ ଆସନ୍ତି । ଡେଙ୍ଗା ଭଳି ଲମ୍ୱା, ଶକ୍ତ ପଦକ୍ଷେପ, ମୁଣ୍ଡ ତଳକୁ । ମୁଣ୍ଡର ବାଳ, ଟାଏ, ସ୍ୱେଟର ଓ କାଗଜପତ୍ର ପବନରେ ଇତଃସ୍ତତଃ ହୋଇ ଉଡୁଥିବେ । ଏଭଳି ଏକ ଦୃଶ୍ୟ ସମସ୍ତଙ୍କ ଦୃଷ୍ଟି ଆକର୍ଷଣ କରୁଥିଲା । ଥରେ ସେ ସ୍କୋରବୋର୍ଡ ପାଖ ଦେଇ ଗଲାବେଳେ ମାଳୀ ଜଣେ ଥଟ୍ଟାରେ କୁଆଡ଼େ କହିଥିଲା, "ସେଠି ଜଣେ ଗ୍ରୀସ ଦେଶର କବି ଯାଉଛନ୍ତି, ମତେ ଦେଖିଲେ ଆଉ ଛାଡିବେ ନାହିଁ ।" ପାଭିଲିୟନର ବିପରୀତ ଦିଗରେ ତାଙ୍କର ମନ ପସନ୍ଦ ଜାଗାଟି ରିଜର୍ଭ ଥାଏ । ଯେପରିକି ସୂର୍ଯ୍ୟଙ୍କର ପ୍ରତ୍ୟେକ ରଶ୍ମି ତାଙ୍କ ଦେହ ଉପରେ ପଡିବ । ସୂର୍ଯ୍ୟ କିରଣ ପ୍ରତି ତାଙ୍କର ପ୍ରବଳ ଆସକ୍ତି

ଥିଲା । ସୂର୍ଯ୍ୟଙ୍କୁ ଭୁତେଇ କିରଣ ପାଇବା ଉଦ୍ଦେଶ୍ୟରେ ସେ ମେ ମାସର ନିର୍ମଳ ଅପରାହ୍ନରେ ବି "ଭଗବାନ-ବିରୋଧୀ ବ୍ୟାଟେରୀ" ସାଙ୍ଗରେ ଆଣୁଥିଲେ । "ଭଗବାନ-ବିରୋଧୀ ବ୍ୟାଟେରୀ" କହିଲେ ତିନି-ଋରୋଟି ସ୍ୱେଟର, ଭଉଣୀର ଛତା ଓ ନିଜ ଗବେଷଣା ପାଣ୍ଡୁଲିପି ନଚେତ୍ ପି.ଏଚ୍.ଡି ଥିସିସ ନଚେତ୍ ରୟାଲ ସୋସାଇଟିରୁ ରେଫରୀ ହିସାବରେ ପାଇଥିବା କିଛି ସନ୍ଦର୍ଭ ବା ଟ୍ରାଇପସ ପ୍ରଶ୍ନ ଗୁଡିକର ଉତ୍ତର ଇତ୍ୟାଦି ଭର୍ତ୍ତି ଗୋଟିଏ ବଡ଼ ଲଫାପାକୁ ବୁଝାଉଥିଲା । ତାଙ୍କର ଜଣେ ପରିଚିତ ଲୋକଙ୍କ କହିବା ଅନୁଯାୟୀ ତାଙ୍କ ଯୋଜନା ହେଲା ଯେ ଭଗବାନ ଯେତେବେଳେ ଦେଖିବେ ଯେ ହାର୍ଡି ପାଗ ପରିବର୍ତ୍ତନ ଆଶା କରି କାମ କରିବାର ମସୁଧା କରିଛି ସେ ନିଜ ପ୍ରଭୁତ୍ୱ ଜାହିର କରିବା ଓ ହାର୍ଡିଙ୍କୁ ଭୁଲ ପ୍ରମାଣିତ କରିବା ପାଇଁ ନିର୍ମଳ ପାଗଟିଏ ହିଁ ଦେବେ ।

ସେ ସବୁବେଳେ ଗ୍ୟାଲେରୀର ଗୋଟିଏ ଯାଗାରେ ହିଁ ବସୁଥିଲେ । ଦୀର୍ଘ ଅପରାହ୍ନର କ୍ରିକେଟ ଖେଳ ଦେଖିବାର ମଜାଟିକୁ ସମ୍ପୂର୍ଣ୍ଣ କରିବାକୁ ସେ ଋହୁଁଥିଲେ ସୁନ୍ଦର ପାଗ ଓ ପାଖରେ ଜଣେ ସାଙ୍ଗ । ଖେଳର କୌଶଳ, ଚାତୁର୍ଯ୍ୟ ଓ ସୌନ୍ଦର୍ଯ୍ୟ ପ୍ରତି ଥିଲା ତାଙ୍କର ଗଭୀର ଆକର୍ଷଣ । ମୁଁ ଏସବୁକୁ ବୁଝାଇବାକୁ ଚେଷ୍ଟା କରିବି ନାହିଁ କାରଣ ସଠିକ୍ ଭାଷା ଜାଣିନଥିଲେ ଏସବୁକୁ ପ୍ରକାଶ କରିହେବ ନାହିଁ । ଠିକ୍ ଯେପରି ହାର୍ଡିଙ୍କର କିଛି ମୌଳିକ କଥାକୁ ବୁଝିହେବ ନାହିଁ ଯଦି ଜଣେ କ୍ରିକେଟର ଭାଷା ବା ନମ୍ବର ତତ୍ତ୍ୱର ଭାଷା ବା ଆହୁରି ଭଲ ଯଦି ଉଭୟ ସହ ପରିଚିତ ନୁହେଁ । ଜଣେ ଉଚ୍ଚ ଚେତନାର ବ୍ୟକ୍ତି ହୋଇଥିବା ସତ୍ତ୍ୱେ ଆମ ଭଳି ଅନେକ ସାଙ୍ଗମାନଙ୍କର ଯୋଗ ଭଲ ଯେ ସେ ସାଧାରଣ ମଣିଷ ଭଳି ଥଟ୍ଟାମଜା କରିବାକୁ ମଧ୍ୟ ଭଲ ପାଉଥିଲେ ।

ତାଙ୍କର କୌଣସି ବିଶେଷ ମନସ୍ତାତ୍ତ୍ୱିକ ଅନ୍ତର୍ଦୃଷ୍ଟି ନଥିଲା ବୋଲି ସେ ନିଜେ ହୁଏତ ଘୋଷଣା କରି ପାରିଥାଆନ୍ତି । କିନ୍ତୁ ପ୍ରକୃତରେ ସେ ଜଣେ ଅପ୍ରତିଦ୍ୱନ୍ଦୀ ବୁଦ୍ଧିମାନ ବ୍ୟକ୍ତି ଥିଲେ । ସେ ସବୁବେଳେ ଆଖି ଖୋଲା ରଖୁଥିଲେ । ଖୁବ୍ ପଢୁଥିଲେ । ଫଳତଃ ମଣିଷ ପ୍ରକୃତି ବିଷୟରେ ତାଙ୍କର ଗଭୀର ଜ୍ଞାନ ଥିଲା । ସେ ଜ୍ଞାନ ଥିଲା ଯେତିକି ଦୃଢ଼, ସେତିକି ମଧ୍ୟ ନୈତିକ ଛଳନା ମୁକ୍ତ । ନୈତିକତା କ୍ଷେତ୍ରରେ ସେ ଥିଲେ ଅତ୍ୟନ୍ତ ନିଷ୍କପଟ ଓ ସ୍ପଷ୍ଟବାଦୀ । (ତାଙ୍କ ଠାରୁ ଅଧିକ ସ୍ପଷ୍ଟ କେହି ହୋଇପାରିବେ ବୋଲି ମୁଁ ଭାବିପାରୁନି) । ଛଳନା, ଅନ୍ୟପ୍ରତି ଆତ୍ମବଡିମାପୂର୍ଣ୍ଣ ହେୟଭାବ ତଥା ପ୍ରତାରଣାଭରା ଗୁଣ ଗୁଡିକର ବିରାଟ ଶୋଭାଯାତ୍ରା ପ୍ରତି ତାଙ୍କର ବିଦ୍ରୂପଭରା ଭୟ

ଥିଲା । ସବୁଠାରୁ ସୁନ୍ଦର ଖେଳ କ୍ରିକେଟ ମଧ୍ୟ ଅନ୍ୟଏକ ଦୃଷ୍ଟିରୁ ସବୁଠାରୁ ବଡ଼ ପ୍ରତାରଣାର ଖେଳ । ଏହାକୁ ଦଳୀୟମନୋବୃତ୍ତିର ଏକ ସର୍ବୋତ୍କୃଷ୍ଟ ନମୁନାଭାବେ ଧରାଯାଏ । ନୀତି ଦୃଷ୍ଟିରୁ ନିଜେ ଶହେ ରନ କରି ଦଳ ହାରିବା ଠାରୁ ନିଜେ ଶୁନ ରନ୍ କରି ଦଳ ଜିତିବାକୁ ପ୍ରତ୍ୟେକ ଖେଳାଳୀ ଶ୍ରେୟ ମନେ କରିବା ଉଚିତ୍ (ଥରେ ଜଣେ ବିଖ୍ୟାତ ଖେଳାଳୀ ହାର୍ଡିଙ୍କ ଭଳି ସରଳ ସ୍ପଷ୍ଟବାଦୀତା ସହ ସ୍ୱୀକାର କରିଥିଲେ ଯେ ସେ କେବେହେଲେ ପୁରାମାତ୍ରାରେ ଏପରି ଏକ ମାନସିକତା ପୋଷଣ କରିବାରେ ସମର୍ଥ ହୋଇପାରିନଥିଲେ) । କ୍ରିକେଟ ଖେଳର ଏହି ଧର୍ମ ହିଁ ହାର୍ଡିଙ୍କ ମନରେ କିଛି ବିଚିତ୍ର ଧାରଣା ଜନ୍ମ ଦେଇଥିଲା । ସେଭଳି ଧାରଣା ଗୁଡିକର ପ୍ରତିରୋଧ ଉଦ୍ଦେଶ୍ୟରେ ସେ ଅନେକ ଗୁଡିଏ ସମାନତା ରକ୍ଷାକାରୀ ମନ୍ତବ୍ୟ ସୃଷ୍ଟି କରିଥିଲେ । ଯଥା;

"କ୍ରିକେଟ ଏକମାତ୍ର ଖେଳ ଯେଉଁଠି ଜଣେ ଲୋକ ବିରୋଧୀ ଦଳର ଏଗାର ଜଣ ଓ ନିଜ ଦଳର ଦଶଜଣଙ୍କ ବିରୁଦ୍ଧରେ ଖେଳିଥାଏ ।"

"ପ୍ରଥମେ ପିଚ୍‌କୁ ଗଲାବେଳେ ଯଦି ମନ ଭୟଗ୍ରସ୍ତ ଥାଏ ତେବେ ସାଥୀ ଜଣକ ଆଉଟ୍ ହୋଇଗଲେ ଯେତେ ସାହସ ମିଳିଥାଏ ଆଉ କୌଣସିଥିରୁ ସେଭଳି ସାହସ ମିଳିନଥାଏ ।"

ଯଦି ଶ୍ରୋତାର ଭାଗ୍ୟ ଭଲ ଥାଏ ତେବେ କ୍ରିକେଟ ଭିନ୍ନ ଅନ୍ୟାନ୍ୟ ବିଷୟରେ ମଧ୍ୟ ତତ୍ତୁଲ୍ୟ ବୁଦ୍ଧିମତ୍ତାଭରା ଶାଣିତ ମନ୍ତବ୍ୟମାନ ତାଙ୍କ ଠାରୁ ଶୁଣିବାକୁ ମିଳେ । "ଆତ୍ମଚିନ୍ତନ"ରେ ସେଭଳି କିଛି ଉଦାହରଣ ଅଛି । ମୁଁ କେତୋଟିର ଉଲ୍ଲେଖ କରୁଛି;

"ବହୁମତକୁ ଉପସ୍ଥାପନ କରିବାରେ ବୁଦ୍ଧିମାନ ଲୋକ ସମୟ ନଷ୍ଟ କରିବା ଉଚିତ୍ ନୁହେଁ । କାରଣ ସଂଖ୍ୟାନୁସାରେ ବହୁମତକୁ ବ୍ୟକ୍ତ କରିବାକୁ ତ ବହୁତ ଲୋକ ଅଛନ୍ତି ।"

"ମୁଁ କଲେଜରେ ସ୍ନାତକ ଶ୍ରେଣୀରେ ଥିଲାବେଳେ ରକ୍ଷଣଶୀଳତାରୁ ମୁକ୍ତ ବୋଲି ଦେଖାଇବାକୁ ଯାଇ ହୁଏତ କହିପାରିଥାଆନ୍ତି ଯେ ଔପନ୍ୟାସିକ ଭାବରେ କେବଳ ଟଲଷ୍ଟୟ ହିଁ ଜର୍ଜ ମେରେଡିଥ୍‌ଙ୍କ ସମକକ୍ଷ ହୋଇପାରନ୍ତି; ଅନ୍ୟ କେହି ନୁହେଁ ।" (ଏକଥା ଆଧୁନିକ ଫେସନ୍‌ର ନିଶାକୁ ନେଇ କୁହାଯାଇଥିଲା ।)

"ଯେ କୌଣସି ଗୁରୁତ୍ୱପୂର୍ଣ୍ଣ କାମ ପାଇଁ ବୁଦ୍ଧି ଗୋଟିଏ ଛୋଟିଆ ଅସ୍ତ୍ର ମାତ୍ର ।"

"ଯୁବକମାନେ ଆତ୍ମାଭିମାନୀ ହେବା ଉଚିତ୍ କିନ୍ତୁ ମୂର୍ଖ ହେବା ଉଚିତ୍ ନୁହେଁ ।" (କିଏ ଜଣେ ତାଙ୍କୁ 'ଫିନ୍ନେଗାନ୍‌ସ ୱେକ୍' -ସର୍ବଶ୍ରେଷ୍ଠ ସାହିତ୍ୟକୃତି ବୋଲି କହିବା ଅବସରରେ ସେ ଏକଥା କହିଥିଲେ ।)

"ବେଳେବେଳେ ଖୁବ୍ କଠୋର କଥା କହିବା ଦରକାର ପଡେ କିନ୍ତୁ କଥାଟିକୁ ଯେତେ ସରଳଭାବରେ କହି ହେବ ସେତେ ଭଲ ।"

ସମୟେ ସମୟେ କ୍ରିକେଟ ଖେଳ ଦେଖିଲାବେଳେ ପ୍ରତି ବଲକୁ ଅନେଇ ରହିବାରେ ତାଙ୍କର ଉତ୍କଣ୍ଠା ନଥାଏ । ସେତେବେଳେ ସେ ବିଭିନ୍ନ ପ୍ରକାର ଦଳ ଗଠନ କରିବା ପ୍ରକ୍ରିୟା ଆରମ୍ଭ କରନ୍ତି । ବିଭିନ୍ନ ପ୍ରକାର ଦଳର ନାଁ ହେଲା ଠକମାନଙ୍କ ଦଳ, କ୍ଲବଲୋକଙ୍କ ଦଳ, ଅର୍ବାଚୀନ କବିଙ୍କ ଦଳ, ବାକ୍ୟବୀରଙ୍କ ଦଳ, HA, SN ଇତ୍ୟାଦି ଅକ୍ଷରରେ ଆରମ୍ଭ ହେଉଥିବା ନାମଧାରୀମାନଙ୍କ ଦଳ (ଯେପରି ହାଡ୍ରିୟାନ, ହାନ୍ନିବାଲ ଇତ୍ୟାଦି), ଟ୍ରିନିଟି ଓ କ୍ରାଏଷ୍ଟର ସର୍ବକାଳୀନ ଦଳ ଇତ୍ୟାଦି ଇତ୍ୟାଦି । ଏ ପ୍ରକାର କସ୍‌ରତ୍‌ରେ ମୁଁ ଟିକେ ଅଡୁଆରେ ପଡେ । SNକୁ ନେଇ ଆରମ୍ଭ ହେଉଥିବା ପୃଥିବୀ ବିଖ୍ୟାତ ନାଁ ଗୁଡିକ ଏକାଠି କରିବାକୁ ବସିଲେ ମୋ' ଅସୁବିଧାଟା ସ୍ୱତଃ ଧରା ପଡିଯାଏ । ଟ୍ରିନିଟି ଦଳ ସମସ୍ତଙ୍କ ତୁଳନାରେ ଖୁବ୍ ଶକ୍ତିଶାଳୀ (ଏଥିରେ କ୍ଲାର୍କ ମ୍ୟାକ୍ସୱେଲ, ବାଇରନ୍, ଥାକେରେ, ଟେନିସନଙ୍କ ପରି ଲୋକମାନଙ୍କର ମଧ୍ୟ ଦଳରେ ସ୍ଥାନ ସୁରକ୍ଷିତ ନୁହେଁ) । କ୍ରାଏଷ୍ଟ କଲେଜ ଦଳଟି ମିଲଟନ୍, ଡାରଓ୍ୱିନଙ୍କ ଭଳି ନାଁ ନେଇ ଖୁବ୍ ଶକ୍ତିଶାଳୀ ଭାବରେ ଆରମ୍ଭ କଲେ ମଧ୍ୟ ତିନି, ଚାରି ନମ୍ବର ଆଡକୁ ଆଉ ବିଶେଷ କେହି ନାହାନ୍ତି ।

ଦଳ ଗଠନ ଛାଡି ତାଙ୍କର ଆଉ ଗୋଟିଏ ମନପସନ୍ଦର ଚିତ୍ତବିନୋଦନ କାର୍ଯ୍ୟକ୍ରମ ଥିଲା । "ଗତକାଲି ରାତିରେ ଆମେ ଯେଉଁ ଲୋକଟିକୁ ଭେଟିଥିଲେ ତାକୁ ଚାଲ ନମ୍ବର ଦେବା" ବୋଲି କହି କଥାଟା ଆରମ୍ଭ କରିବେ । ତା' ଅର୍ଥ ହେଲା ବହୁଦିନୁ ସେ ଆବିଷ୍କାର କରିଥିବା କେତେ ଗୁଡିଏ ଶ୍ରେଣୀ ବିଭାଗରେ ଉକ୍ତ ଲୋକଟିକୁ ଶହେରୁ କେତେ ନମ୍ବର ମିଳିବ ନର୍ଣ୍ଣୟ କରିବାକୁ ହେବ । ତାଙ୍କ ଆବିଷ୍କୃତ ଶ୍ରେଣୀ ଗୁଡିକର ନାଁ ହେଲା ଷ୍ଟାର୍କ (ପୂରା ବାରି ହୋଇପଡୁଥିବା ଲୋକ), ବ୍ଲିକ (ଫିକାବ୍ୟକ୍ତିତ୍ୱ), ଡିମ୍ (ଲୁଚି ଗଲାଭଳି ବ୍ୟକ୍ତିତ୍ୱ), ଓଲଡ୍ ବ୍ରାଣ୍ଡି (ପୁରୁଣା ବ୍ରାଣ୍ଡି), ସ୍କିନ ଓ ସେହିଭଳି ଆଉ କେତେକ । (ଷ୍ଟାର୍କ ଶ୍ରେଣୀର ଲୋକ ବ୍ଲିକ୍ ଶ୍ରେଣୀର ନ ହୋଇପାରେ କିନ୍ତୁ ସବୁ ବ୍ଲିକ୍ ଶ୍ରେଣୀର ଲୋକ ଷ୍ଟାର୍କ ଶ୍ରେଣୀର ହେବାକୁ ନିଶ୍ଚୟ ଇଛା କରିବେ) । ଷ୍ଟାର୍କ, ବ୍ଲିକ୍ ଓ

ଡିମ୍ ଇତ୍ୟାଦି ସହଜରେ ବୁଝି ହେଉଛି । (ଓ୍ୱେଲିଙ୍ଗଟନ୍‌ର ଡ୍ୟୁକ୍ ଷାର୍କ ଓ ବ୍ଲିକ୍ ଭାବରେ ଶହେରୁ ଶହେ ଓ ଡିମ୍ ଭାବରେ ଶୂନ ପାଇବେ) । ପୁରୁଣା ବ୍ରାଣ୍ଡି ବ୍ୟତୀତ ଆଉ କିଛି ପିଉ ନଥିବା ଗୋଟିଏ ପୌରାଣିକ ଚରିତ୍ରର ନାଁ କୁ ନେଇ ଓଲଡ୍ ବ୍ରାଣ୍ଡି ନାଁଟି ସୃଷ୍ଟି କରାଯାଇଛି । ତେଣୁ ଓଲଡ ବ୍ରାଣ୍ଡି କହିଲେ ଜଣେ ଅଦ୍ଭୁତ, ଅବାଗିଆ, ମାନସିକ ଅସୁସ୍ଥତାର ସୀମାନ୍ତବର୍ତ୍ତୀ ଲୋକଙ୍କୁ ବୁଝାଏ । ବ୍ୟକ୍ତିତ୍ୱ ଆକଳନରେ (ହାର୍ଡିଙ୍କ ଦୃଷ୍ଟିରେ ଜଣେ ଲେଖକ ଭାବରେ ବି ସେହି ଶ୍ରେଣୀର ଯଦିଓ ମୁଁ ସେଭଳି ଭାବେ ନାହିଁ ) ପ୍ରାଉଷ୍ଟ ଓଲଡ୍ ବ୍ରାଣ୍ଡି ଭାବରେ ବହୁତ ବେଶୀ ନମ୍ବର ପାଇବେ । ଏଫ.ଏ. ଲିଣ୍ଡେମ୍ୟାନ (ପରେ ତାଙ୍କ ନାଁ ଲର୍ଡ ଚେରଓ୍ୱେଲ ହେଲା) ମଧ୍ୟ ସେହି ଶ୍ରେଣୀୟ ।

ଗ୍ରୀଷ୍ମ ଦିନ ଗୁଡିକ ଗଡି ଚାଲିଲା । ଅଳ୍ପ ଅବଧିର ପାଠପଢ଼ା ସିଜନ ପରେ ବିଶ୍ୱବିଦ୍ୟାଳୟର ମ୍ୟାଚ୍ ସମୟ ଆସିଲା । ଲଣ୍ଡନରେ ଭେଟିବୀ ଇଚ୍ଛାରେ ତାଙ୍କ ସହ ଯୋଗସୂତ୍ର ସ୍ଥାପନ କରିବା ବହୁତ କଷ୍ଟ କର ବ୍ୟାପାର ଥିଲା । ମୁଁ ଆଗରୁ କହିଛି ଯେ ହାର୍ଡିଙ୍କର ସବୁପ୍ରକାର ଯନ୍ତ୍ରପାତି ଉପରେ ସାଂଘାତିକ ସନ୍ଦେହ ଥାଏ, ବିଶେଷକରି ଟେଲିଫୋନ ଉପରେ । (ସେ କେବେବି ଘଣ୍ଟା ବ୍ୟବହାର କରୁନଥିଲେ) । ସେ ସବୁବେଳେ ହତାଦରପୂର୍ଣ୍ଣ ସ୍ୱରରେ କହନ୍ତି "ତମର ଯଦି ଟେଲିଫୋନ ଧରି ଦେଖେଇ ହେବାର ଅଛି, ତେବେ ପାଖ ରୁମରେ ଗୋଟିଏ ଟେଲିଫୋନ ଅଛି, ବ୍ୟବହାର କରିପାର ।" ଥରେ କୌଣସି ଜରୁରୀ କାମରେ ତାଙ୍କର ମତେ ଟେଲିଫୋନ କରିବା ଦରକାର ପଡିଲା । ବିରକ୍ତିଆ ସ୍ୱରରେ କହିଲେ, "ମୁଁ ତୁମର ଗୋଟିଏ ହେଲେ ଶବ୍ଦ ଶୁଣିବାକୁ ଚାହେଁ ନାହିଁ । ମୁଁ କହିସାରିବା ମାତ୍ରେ ଟେଲିଫୋନଟି ଥୋଇଦେବି । ଆଜି ରାତି ନ'ଅଟାରୁ ଦଶଟା ଭିତରେ ତମକୁ ଯେମିତି ହେଲେ ଆସିବାକୁ ପଡିବ । ଜରୁରୀ କାମ ଅଛି ।" ଧଡ୍ ।

ବିଶ୍ୱବିଦ୍ୟାଳୟ ମ୍ୟାଚ୍‌ରେ କିନ୍ତୁ ଯଥା ସମୟରେ ପହଞ୍ଚିଗଲେ । ବର୍ଷ ପରେ ବର୍ଷ ଏହି ବେଳେ ହିଁ ସେ ସବୁଠାରୁ ଅଧିକ ଫୁର୍ତ୍ତି ଓ ସତେଜ ଦେଖାଯାଆନ୍ତି । ସାଙ୍ଗସାଥୀ, ଭଦ୍ରବ୍ୟକ୍ତି, ଭଦ୍ରମହିଳାଙ୍କ ଗହଣରେ ତାଙ୍କ ଲାଜକୁଳା ଭାବ ସତେ ଯେପରି ଉଭେଇଯାଏ । ସେ ଆକର୍ଷଣର କେନ୍ଦ୍ରବିନ୍ଦୁ ହୋଇଯାଆନ୍ତି । ଏଭଳି ପରିବେଶ ତାଙ୍କୁ ବେଶ୍ ଭଲ ଲାଗେ । ବେଳେବେଳେ କ୍ରିକେଟ୍ ପଡିଆର ବେଶ୍ କିଛି ଦୂରକୁ ଏମାନଙ୍କ ହସଖୁସିର କୋଳାହଳ ସ୍ପଷ୍ଟ ଶୁଭୁଥାଏ ।

ଖୁସିର ସେହି ଶେଷ ବର୍ଷ ଗୁଡିକରେ ସେ ଯାହା କରୁଥିଲେ ସେଥିରେ ସୌନ୍ଦର୍ଯ୍ୟ, ଶୃଙ୍ଖଳା ଓ ଉତ୍କର୍ଷର ଝଲକ ବାରିହୋଇ ପଡୁଥିଲା । କ୍ରିକେଟ ଖେଳ ସୌନ୍ଦର୍ଯ୍ୟ ଓ

ଶୃଙ୍ଖଳା ଆଧାରିତ ହୋଇଥିବାରୁ ହିଁ ସେ ସେଥିରେ ଏକ ଅନ୍ତର୍ନିହିତ କମନୀୟତା ଦେଖିପାରୁଥିଲେ । ହାର୍ଡିଙ୍କ ଗଣିତରେ ମଧ୍ୟ, ପ୍ରଥମରୁ ଶେଷ ଯାଏ, ଏହି ସମସ୍ତ ସୌନ୍ଦର୍ଯ୍ୟବୋଧ ଭରି ରହିଥିଲା ବୋଲି ମତେ କୁହାଯାଇଛି । ମୋର ଯେତେଦୂର ଧାରଣା, ବନ୍ଧୁ ଓ ପ୍ରଶଂସକ ମାନଙ୍କ ଗହଣରେ ହାର୍ଡି ଜଣେ ପ୍ରଗଳ୍ଭ ଲୋକ ଭାବରେ ପରିଚିତ ଥିଲେ । କିନ୍ତୁ ଅନେକ ଗୁରୁତ୍ୱପୂର୍ଣ୍ଣ ପରିସ୍ଥିତିରେ (ଯାହା ଶ୍ରୋତା ଓ ବକ୍ତା ଉଭୟଙ୍କ ପାଇଁ ଗୁରୁତ୍ୱପୂର୍ଣ୍ଣ) ସେ ଥିଲେ ଜଣେ ଗମ୍ଭୀର ଓ ଏକାଗ୍ର ଶ୍ରୋତା । ମୋ' ଜଣାଶୁଣା ବିଖ୍ୟାତ ବ୍ୟକ୍ତିମାନଙ୍କ ମଧ୍ୟରେ ୱେଲସ ଆଶାନୁରୂପ ଶ୍ରୋତା ଆଦୌ ନଥିଲେ । ରଦରଫୋର୍ଡ ଥିଲେ ଶ୍ରୋତାଭାବରେ ଅନେକ ଭଲ କିନ୍ତୁ ଲଏଡ ଜର୍ଜ ବୋଧହୁଏ ସବୁ ସମୟର ଶ୍ରେଷ୍ଠ ଶ୍ରୋତାମାନଙ୍କ ମଧ୍ୟରେ ନମ୍ବର ୱାନ୍ । ହାର୍ଡି ଅନ୍ୟମାନଙ୍କ କଥାରୁ ବିଶେଷ କିଛି ଧାରଣା ବା ସୂଚନା ଛାଣି ପାରୁନଥିଲେ ବି ଅନ୍ତତଃ ଅନ୍ୟ ଲୋକ କଥାକୁ ମନ ଦେଇ ଶୁଣୁଥିଲେ । ମୁଁ "ଦି ମାଷ୍ଟରସ" ଲେଖିବାର ଅନେକ ବର୍ଷ ପୂର୍ବରୁ ସେ ବହିର ପରିକଳ୍ପନା କଥା ଶୁଣି ମତେ ଜେରା କରିବା ଆରମ୍ଭ କରିଦେଲେ । ସେତେବେଳେ ମୁଁ ହିଁ କେବଳ ଯାହା କହିବାର କହୁଥାଏ । ସେ ମୁଖ୍ୟତଃ ଶୁଣୁ ଥାଆନ୍ତି । ସେ ଅବଶ୍ୟ କେତେକ ସୁନ୍ଦର ଆଇଡିଆ ଦେଲେ । କେତେ ଭଲ ହୋଇଥାଆନ୍ତା ଯଦି ବହିଟିକୁ ପଢ଼ିବା ଯାଏ ସେ ରହିଥାଆନ୍ତେ । ମୋର ଧାରଣା ବହିଟି ତାଙ୍କୁ ଭଲ ଲାଗି ଥାଆନ୍ତା । ଯାହା ବି ହେଉ, ସେହି ଭାବନା ସହ ହିଁ ମୁଁ ବହିଟିକୁ ତାଙ୍କ ସ୍ମୃତିରେ ଉତ୍ସର୍ଗ କରିଥିଲି ।

"ଆତ୍ମଚିନ୍ତନ" ଶେଷରେ ସ୍ଥାନୀତ ଟୀପ୍ପଣୀରେ ସେ ଅନ୍ୟ କେତେକ ଆଲୋଚନା କଥା ଉଠାଇଛନ୍ତି । ସେଥିରୁ ଗୋଟିଏ ଥିଲା ବେଶ୍ ପୁରୁଣା ଓ ବେଳେବେଳେ ଖୁବ୍ ତିକ୍ତତାଭରା । ଦ୍ୱିତୀୟ ମହାଯୁଦ୍ଧକୁ ନେଇ ଆମେ ଦୁଇଜଣ ଅତ୍ୟନ୍ତ ଭାବପ୍ରବଣ ଥିଲୁ । ଯାହା ମୁଁ କିଛି ସମୟ ପରେ କହିବାକୁ ଯାଉଛି ସେଥିରୁ ଜଣାପଡିବ ଯେ ଆମେ ପରସ୍ପର ବିରୋଧୀ ମତ ପୋଷଣ କରୁଥିଲୁ । ମୁଁ ମୋ ମତରୁ ଇଞ୍ଚେ ମାତ୍ର ବିଚ୍ୟୁତ ହୋଇନଥିଲି । ଯଦିଓ ଆମ ଭିତରେ ଅଲଂଘ୍ୟ ମତାନ୍ତର ଥିଲା ତଥାପି ମୋ କଥା ଅନ୍ତରାଳରେ ଥିବା ଯୁକ୍ତିକୁ ସେ ଖୁବ୍ ଭଲ ଭାବେ ବୁଝିପାରୁଥିଲେ । ମୋର ତାଙ୍କ ସହିତ ହୋଇଥିବା ଯେ କୌଣସି ଯୁକ୍ତି ତର୍କ କ୍ଷେତ୍ରରେ ଏହାହିଁ ଥିଲା ମୂଳକଥା ।

୧୯୩୦ ଯାଏ ସେ ନିଜ ଇଚ୍ଛା ମୁତାବକ ଯୁବକର ଜୀବନ ବିତାଇଥିଲେ । ହଠାତ୍ ଏଥିରେ ଭଙ୍ଗା ପଡିଗଲା । ୧୯୩୯ରେ ସେ କରୋନାରୀ ଥ୍ରମ୍ବୋସିସରେ

ପୀଡିତ ହେଲେ । ସେ ଅବଶ୍ୟ ଆରୋଗ୍ୟଲାଭ କଲେ କିନ୍ତୁ ତାଙ୍କୁ ବହୁତ ଆନନ୍ଦ ଦେଉଥିବା ଟେନିସ୍ ଖେଳ, ସ୍କ୍ୱାସ୍ ଓ ଶାରିରୀକ କାର୍ଯ୍ୟ ସବୁ ଦିନ ଲାଗି ବନ୍ଦ ହୋଇଗଲା । ବୋଝ ଉପରେ ନଳିତା ବିଡ଼ା ପରି ଦ୍ୱିତୀୟ ମହାଯୁଦ୍ଧ ମଧ୍ୟ ତାଙ୍କୁ ଆହୁରି ନୈରାଶ୍ୟ ଭିତରକୁ ଠେଲିଦେଲା । ତାଙ୍କୁ ଦୁଇଟି ଯାକ ମହାଯୁଦ୍ଧ ଗୋଟିଏ ଖିଅରେ ବନ୍ଧା ପାଗଳାମି ଭଳି ଲାଗୁଥିଲା । ସେ କେବେହେଲେ ଯୁଦ୍ଧ ସହ ନିଜକୁ ସାମିଲ କରିପାରୁ ନଥିଲେ; ନା ୧୯୧୪ରେ ନା ଏଥର । ତାଙ୍କର ଜଣେ ଅତ୍ୟନ୍ତ ଘନିଷ୍ଠ ବନ୍ଧୁ ଯୁଦ୍ଧରେ ମୃତ୍ୟୁବରଣ କଲେ । ଦୁଃଖ ସବୁ ପରସ୍ପର ସହ ପରିପୂରକ ଥାଆନ୍ତି ବୋଲି ମୋର ଧାରଣା । ଶେଷରେ ଷାଠିଏ ବର୍ଷ ଟପିବା ପରେ ସେ ସୃଜନଶକ୍ତି ମଧ୍ୟ ହରାଇ ବସିଲେ ।

ସେଥିପାଇଁ "ଆତ୍ମଚିନ୍ତନ"କୁ ଯଦି ଜଣେ ଧ୍ୟାନର ସହ ପଢ଼େ ତେବେ ସେ ଜାଣି ପାରିବ ଯେ ଏହା ଏକ ମର୍ମଭେଦୀ ଦୁଃଖର ଗାଥା । ଏକଥା ନିରାଟ ସତ ଯେ ବହିଟି ବୌଦ୍ଧିକ ଉତ୍କର୍ଷ ଓ ତୀକ୍ଷ୍ଣ ପ୍ରତ୍ୟୁତ୍ପନ୍ନମତିତାର ଆଲେଖ୍ୟ । ବହିଟିର ଛତ୍ରେଛତ୍ରେ ଫୁଟି ଉଠିଛି ସ୍ଫଟିକତୁଲ୍ୟ ସ୍ୱଚ୍ଛତା । ସର୍ବୋପରି ଏହା ଏକ ସୃଜନଶୀଳ କଳାକାରର ଆତ୍ମଚିନ୍ତନ । ସବୁ ସତ୍ତ୍ୱେ ଏହା ମଧ୍ୟ ଏକ ହଜି ଯାଇଥିବା ସୃଜନଶକ୍ତିର ଭବିତବ୍ୟତାକୁ ସାହାସର ସହ ଗ୍ରହଣ କରିନେବାର ତଥା ସେଥିପାଇଁ ଭାବାବେଗପୂର୍ଣ୍ଣ ବିଦାପର ମୃଦୁ ଉପସ୍ଥାପନା । ଇଂରାଜୀ ଭାଷାରେ ଏହାର ସମତୁଲ୍ୟ ଏକ କୃତି ଥିବାର ମୁଁ ଜାଣିନାହିଁ । କାରଣ ହଜିଗଲା ସୃଜନଶକ୍ତିକୁ ନେଇ ସାହିତ୍ୟ ସୃଷ୍ଟି କରିବାର ଦକ୍ଷତାଥିବା ଲୋକମାନଙ୍କର ସେଭଳି ଅନୁଭବ ଆସେ ନାହିଁ । ତା'ର ଲେଖକ ଜୀବନ ଯେ ସମ୍ପୂର୍ଣ୍ଣ ଓ ନିଶ୍ଚିତ ଭାବରେ ଶେଷ ହୋଇଯାଇଛି, ଏହି ଧାରଣା ଜଣେ ଲେଖକ ମନରେ ଆସିବା ଖୁବ୍ ବିରଳ ।

ସେହି ଦିନ ଗୁଡିକରେ ତାଙ୍କୁ ଦେଖିଲେ ସେ ଗୋଟିଏ ଯୁବକ-ସୁଲଭ ଜୀବନ ବଞ୍ଚିବା ପାଇଁ ତାଙ୍କୁ କି ମୂଲ୍ୟ ଦେବାକୁ ପଡୁଛି ସେ କଥା ନଭାବି ମୁଁ ରହିପାରେ ନାହିଁ । ନିଜ ଯୌବନ ଓ କ୍ରୀଡ଼ା ନୈପୁଣ୍ୟକୁ ନେଇ ଗର୍ବ କରୁଥିବା ଜଣେ ବିଖ୍ୟାତ କ୍ରୀଡାବିତ ହଠାତ୍ ତା'ର ପ୍ରତିଭାସବୁ ହରେଇ ବସିବା ସ୍ଥିତିକୁ ଗ୍ରହଣ କରିବାକୁ କିପରି ସଂଘର୍ଷ କରୁଛନ୍ତି ତାହାହିଁ ଯେପରି ଆମ ଆଖି ଆଗରେ ନାଚି ଯାଏ । ଅନେକ ବିଖ୍ୟାତ କ୍ରୀଡ଼ାବିତ୍‌ଙ୍କ ସାଫଲ୍ୟର ଅପରାହ୍ନରେ ସାଧାରଣ ଲକ୍ଷଣ ସବୁ ହେଲା ; ଗୋଡ ଓଜନିଆ ହୋଇ ଠିକ୍ ଚଲୁ ନଥିବ (ଆଖି ଗୁଡିକ ଅଧିକ ଦିନ ଯାଏ ନିଜ କ୍ଷମତା ବଜାୟ ରଖିପାରନ୍ତି), ଷ୍ଟ୍ରୋକ ଠିକ ବାଜୁ ନଥିବ, ଓ୍ୱିମ୍ବଲଡନ୍ ଯିବାକୁ ଡର

ମାତୁଥିବ ଇତ୍ୟାଦି ଇତ୍ୟାଦି । ସେପଟେ ଆଉ ଜଣେ ନୂଆ ଖେଳାଳୀର ଖେଳ ଦେଖିବାକୁ ଲୋକ ଗହଳି ହେଉଥିବ । ଏପରି ଅବସ୍ଥାରେ ଅନେକ ଖେଳାଳୀ ମଦ ପିଇବା ଆରମ୍ଭ କରି ଦିଅନ୍ତି । ହାର୍ଡି ମଦ ପିଇବା ଆରମ୍ଭ କରି ନଥିଲେ ସତ କିନ୍ତୁ ହତାଶ ହୋଇ ପଡୁଥିଲେ । ସେ କିଛି ମାତ୍ରାରେ ଆରୋଗ୍ୟ ଲାଭ କରିଥିଲେ; ଦଶମିନିଟ ବ୍ୟାଟିଂ କରି ପାରୁଥିଲେ, ଦଶ-ପନ୍ଦର ମିନିଟ ଟ୍ରିନିଟି ବାଉଲସ ଖେଳି ପାରୁଥିଲେ । କିନ୍ତୁ କିଛି ଖେଳିବା ପାଇଁ ତାଙ୍କୁ ମନେଇବା କଷ୍ଟକର ହୋଇ ପଡୁଥିଲା । ତିନି-ଚାରି ବର୍ଷ ପୂର୍ବେ ସବୁ କାମ ପାଇଁ ତାଙ୍କର ଏପରି ପ୍ରବଳ ଇଚ୍ଛା ଥିଲା ଯେ ଅନ୍ୟମାନେ ତାଙ୍କ ସାଙ୍ଗରେ କାମ କରି କ୍ଳାନ୍ତ ହୋଇଯାଉଥିଲେ । "କେହି କେବେ ବିରକ୍ତି ଅନୁଭବ କରିବା ଉଚିତ ନୁହେଁ" ଥିଲା ତାଙ୍କ ପାଇଁ ଏକ ସ୍ୱଗୃହୀତ ନିୟମ । ନିୟମ ଅନୁସାରେ, "ଜଣେ ଭୟଭୀତ ହୋଇପାରେ, ବିବ୍ରତ ହୋଇପାରେ କିନ୍ତୁ ବିରକ୍ତ ନୁହେଁ ।" ବିଡମ୍ବନା ଯେ ସେ ନିଜେ ହିଁ ବର୍ତ୍ତମାନ ବିରକ୍ତ ହୋଇ ଉଠୁଥିଲେ ।

ଏହି କାରଣରୁ ହିଁ ମୁଁ ଓ ତାଙ୍କ ଅନ୍ୟ କେତେଜଣ ବନ୍ଧୁ ପ୍ରଥମ ମହାଯୁଦ୍ଧ ସମୟରେ ବଟ୍ରାଣ୍ଡ ରସେଲ ଓ ଟ୍ରିନିଟିର ଭୂମିକାକୁ ନେଇ ଏକ ଆଲେଖ୍ୟ ପ୍ରସ୍ତୁତ କରିବାକୁ ତାଙ୍କୁ ଉତ୍ସାହିତ କରିଥିଲୁ । ହାର୍ଡିଙ୍କ ଅବସାଦର ଗଭୀରତା ଯେଉଁମାନେ ଜାଣି ନଥିଲେ ସେମାନଙ୍କ କହିବା କଥା ଥିଲା ଯେ ପ୍ରଥମ ମହାଯୁଦ୍ଧ ତ କେବେଠାରୁ ସରିଲାଣି, ବର୍ତ୍ତମାନ ସେସବୁ କଥା ଉଠାଇ ଲାଭ କ'ଣ ? କିନ୍ତୁ ପ୍ରକୃତ ଉଦ୍ଦେଶ୍ୟ ଥିଲା କିଛି ଗୋଟେ କାମରେ ତାଙ୍କୁ ଲଗାଇବା ଯାହାକି ତାଙ୍କର ଦୁଃଖ ଭୁଲିବାରେ ସହାୟକ ହେବ । ବହିଟିକୁ ଘରୋଇ ଭାବରେ ବାଣ୍ଟିବାର ବ୍ୟବସ୍ଥା ଆମେ କରିଥିଲୁ । ପରିତାପର କଥା ଯେ ବହିଟି ଜନସାଧାରଣଙ୍କ ପାଖରେ ପହଞ୍ଚି ପାରିନଥିଲା, ତା' ହୋଇପାରିଥିଲେ ଏହା ଟ୍ରିନିଟି ଇତିହାସର ଏକ ଛୋଟ ଅଂଶ ଭାବରେ ନିଶ୍ଚୟ ସ୍ୱୀକୃତ ହୋଇଥାଆନ୍ତା ।

ଆଉ ଖଣ୍ଡେ ବହି ଲେଖିବା ପାଇଁ ମଧ୍ୟ ମୁଁ ତାଙ୍କୁ ବହୁତ ପ୍ରବର୍ତ୍ତାଇଥିଲି ଯେଉଁଭଳି ବହି ଖଣ୍ଡେ ଲେଖିବା ପାଇଁ ସେ ଭଲ ଥିଲାବେଳେ ମତେ କହିଥିଲେ । ବହିର ନାଁ ଦିଆଯାଇଥାଆନ୍ତା "ଏ ଡେ ଆଟ୍ ଦି ଓଭାଲ" । ବହିରେ ରହିଥାଆନ୍ତା ଓଭାଲ ପଡିଆରେ ଗୋଟିଏ ପୂରାଦିନ କ୍ରିକେଟ ଖେଳ ଦେଖିବାର ନିଜସ୍ୱ ବିବରଣୀ । ଖେଳ ଉପରେ ନିଜର ଦୀର୍ଘ ଆଲୋଚନା, ମଣିଷ ପ୍ରକୃତି, ନିଜ ପୂର୍ବସ୍ମୃତି ତଥା ଜୀବନ ଉପରେ ଏକ ଆଲୋକପାତ । ବହିଟି ଏକ ଛୋଟକାଟର କ୍ଲାସିକ ହୋଇଥାଆନ୍ତା କିନ୍ତୁ ବିଡମ୍ବନା ଯେ ଏହା କେବେବି ଲେଖାହୋଇ ପାରିଲା ନାହିଁ ।

ତାଙ୍କର ଶେଷ ଦିନ ଗୁଡ଼ିକରେ ମୁଁ ତାଙ୍କର ବିଶେଷ ସାହଚର୍ଯ୍ୟରେ ଆସି ପାରି ନଥିଲି । ମୁଁ ଯୁଦ୍ଧକାଳୀନ ହ୍ୱାଇଟ ହଲ କାମରେ ବ୍ୟସ୍ତ ରହୁଥିଲି । ସବୁବେଳେ ମୋର କିଛି ନା କିଛି କାମ ରହୁଥାଏ । ମୁଁ କ୍ଳାନ୍ତ ହୋଇ ପଡୁଥିଲି । ଆଉ କେମ୍ବ୍ରିଜ ଯିବା ମଧ୍ୟ ଏତେ ସହଜ ନଥିଲା । ଯଦିଓ ମତେ ଆଜି ଲାଗୁଛି ଯେ ମୁଁ ଯେତିକି ଚେଷ୍ଟା କରିବା କଥା ହୁଏତ କରିନଥିଲି । ଦୁଃଖର ସହ ସ୍ୱୀକାର କରୁଛି ଯେ ଆମ ଦୁହିଁଙ୍କ ଭିତରେ ସମ୍ପର୍କ ସମ୍ପୂର୍ଣ୍ଣ ଅଣ୍ଡା ପଡ଼ି ନଥିଲେ ବି କିଛିଟା ଭଙ୍ଗା ପଡ଼ିଥିଲା । ପୂରା ଯୁଦ୍ଧ ସମୟତକ ସେ ପିମଲିକୋରେ ଥିବା ନିଜ ଫ୍ଲାଟ୍‌ଟି ମତେ ରହିବା ପାଇଁ ଛାଡ଼ି ଦେଇଥିଲେ । ଅନ୍ଧାରୁଆ ଅପରିଚ୍ଛନ୍ନ ଫ୍ଲାଟ୍‌ଟି । ବାହାରେ ଢର୍ଚ୍ଚ ସ୍କୟରର ଛୋଟ ବଗିଚାଟି । ହାର୍ଡିଙ୍କ ଭାଷାରେ ଫ୍ଲାଟ୍‌ଟିର ଥିଲା "ଓଲଡ୍ ବ୍ରାଣ୍ଡି" ଆକର୍ଷଣ । କିନ୍ତୁ ସେ କେବେ ବି ଚାହୁଁ ନଥିଲେ ମୁଁ ଯୁଦ୍ଧ କାମରେ ସମ୍ପୂର୍ଣ୍ଣ ଭାବରେ ନିଯୋଜିତ ହୁଏ । ତାଙ୍କ ମନପସନ୍ଦର ଲୋକମାନେ ସାମରିକ କାର୍ଯ୍ୟରେ ମନଯୋଗୀ ହେବା କଥା ସେ ଆଦୌ ପସନ୍ଦ କରୁନଥିଲେ । ସେ ମତେ ଅବଶ୍ୟ ମୋ' କାମ ବିଷୟରେ କେବେ କିଛି ପଚାରୁନଥିଲେ । ଯୁଦ୍ଧ ବିଷୟରେ କଥା ହେବାକୁ ସେ ଭଲ ପାଉନଥିଲେ । ମୋ ତରଫରୁ ମୁଁ ଟିକେ ଅବୁଝା ଥିଲି, ବିଶେଷ କିଛି ସହାନୁଭୂତି ଦେଖାଇ ନଥିଲି । ମୁଁ ଭାବୁଥିଲି ଯେ ମୁଁ ତ ନିଜ ଖୁସିରେ ଯୁଦ୍ଧ କାମ କରୁନାହିଁ । ବରଂ କର୍ତ୍ତବ୍ୟ ଭାବରେ କରୁଛି । ତେଣୁ ଦାୟିତ୍ୱର ସହ କରିବା ବାଞ୍ଛନୀୟ । କିନ୍ତୁ ଏକଥାକୁ ଏକ କୈଫିୟତ ଭାବରେ ଗ୍ରହଣ କରିହେବ ନାହିଁ ।

ଯୁଦ୍ଧ ଶେଷରେ ମୁଁ କେମ୍ବ୍ରିଜକୁ ଫେରିନଥିଲି । ୧୯୪୬ରେ କିନ୍ତୁ ତାଙ୍କୁ ଅନେକବାର ଭେଟିଥିଲି । ନୈରାଶ୍ୟ ତାଙ୍କୁ ଛାଡ଼ି ନଥାଏ । ଶାରିରୀକ ଦୁର୍ବଳତା ମଧ୍ୟ ବଢୁଥାଏ । ଦିପାଦ ଚାଲିଲେ ଅଣନିଶ୍ୱାସୀ ହୋଇଯାଉଥାଆନ୍ତି । ଖେଳ ଶେଷରେ ପାର୍କ ଚାରିପଟେ ମନ ଖୁସିରେ ବହୁ ସମୟ ଧରି ବୁଲାବୁଲି କରିବା ଅତୀତ ହୋଇସାରିଥାଏ । ମୁଁ ତାଙ୍କୁ ଟ୍ୟାକ୍ସିରେ ଘରଯାଏ ନେଇ ଯାଉଥିଲି । ସେ ନିଜେ ହୁଏତ ଆଶା କରୁଥିଲେ ଯେ ଅଧିକ ନ ହେଉପଛେ ବିଗତ ଦିନ ଗୁଡ଼ିକର ସୃଜନଶକ୍ତି ଟିକକ ଫେରି ପାଆନ୍ତେ କି ! କିନ୍ତୁ ସତ କଥାଟି ହେଲା ଯେ ତାଙ୍କ ଜୀବନ ଶେଷ ହୋଇଯାଇଥିଲା ।

ମୁଁ ତାଙ୍କ କଥା ଗୁଡ଼ିକୁ ଉଦ୍ଧାର କରିବାକୁ ଚେଷ୍ଟା କରୁନାହିଁ । ସେସବୁ ତାଙ୍କ ପରିଚିତ ବ୍ୟକ୍ତିତ୍ୱର ଏତେ ପରିପନ୍ଥୀ ଥିଲା ଯେ ମୁଁ ସେଗୁଡ଼ିକୁ ଭୁଲି ଯିବାକୁ ହିଁ ଇଚ୍ଛା କରିଥିଲି । ଏହାହିଁ ଥିଲା ବିଡମ୍ବନା । ତେଣୁ ମୁଁ ସଠିକ୍ ଭାବରେ କିଛି ମନେ ରଖି

ପାରି ନାହିଁ । ଗୁରୁତ୍ୱହୀନ ବାଉଳତାର ନମୁନା ବୋଲି ଧରିନେଇ ମୁଁ ସେ କଥା ଗୁଡିକୁ ମନରୁ ବାଦ୍ ଦେଇ ଦେଇଥିଲି ।

୧୯୪୭ ମସିହା । ଗ୍ରୀଷ୍ମ ଆରମ୍ଭ ହେଉଥାଏ । ମୁଁ ସକାଳ ଜଳଖିଆ ଖାଉଛି ଟେଲିଫୋନ ବାଜିଲା । ଟେଲିଫୋନ ଥିଲା ହାର୍ଡିଙ୍କ ଭଉଣୀଙ୍କର । ସେ ମତେ କହିଲେ, "ହାର୍ଡି ଗୁରୁତର ଭାବେ ପୀଡିତ । ଆପଣ ଟିକେ କେମ୍ବ୍ରିଜ ଶୀଘ୍ର ଆସି ପାରିବେ କି ? ଟ୍ରିନିଟି ଫାଟକ ପାଖକୁ ଆସିଲେ ଭଲ ହୁଅନ୍ତା" । ଦ୍ୱିତୀୟ ଅନୁରୋଧର ଉଦ୍ଦେଶ୍ୟ ବୁଝି ପାରିନଥିଲି । କିନ୍ତୁ ତାହା ପାଳନ କରି ଟ୍ରିନିଟି ଗେଟ୍ ପାଖରେ ପହଞ୍ଚିଲି । ସେଠାରେ ହାର୍ଡିଙ୍କ ଭଉଣୀ ଲେଖିଥିବା ଚିଠିଟିଏ ମତେ ମିଳିଲା । ଚିଠିରେ ମତେ ଡୋନାଲଡ ରବର୍ଟସନଙ୍କ ରୁମକୁ ଯିବାକୁ କୁହାଯାଇଥିଲା । ଯେଉଁଠାରେ ସେ ମତେ ଅପେକ୍ଷା କରିଥିବେ ।

ଡୋନାଲଡ ରବର୍ଟସନ ଥିଲେ ଗ୍ରୀକ୍ ଭାଷା ପ୍ରଫେସର । ହାର୍ଡିଙ୍କର ଜଣେ ଘନିଷ୍ଠ ବନ୍ଧୁ । ସେ ମଧ୍ୟ ଏଡ୍‌ୱାର୍ଡିୟାନ କେମ୍ବ୍ରିଜର ଉଚ୍ଚ ସଂସ୍କୃତିସମ୍ପନ୍ନ, ଉଦାରବାଦୀ, ଗରିମାମୟ ସମାଜର ଜଣେ ସଦସ୍ୟ । ସେ ବୋଧହୁଏ ଏକମାତ୍ର ବ୍ୟକ୍ତି ଯିଏ ହାର୍ଡିଙ୍କୁ ତାଙ୍କ ପ୍ରଥମ ନାଁ ଧରି ସମ୍ବୋଧନ କରୁଥିଲେ । ସେ ମତେ ଧୀର ଗଳାରେ ଅଭିନନ୍ଦନ ଜଣାଇଲେ । ତାଙ୍କ ରୁମ ବାହାରେ ଏକ ଶାନ୍ତ ଉଜ୍ଜ୍ୱଳ ସକାଳ । ସେ ମତେ କହିଲେ "ତମେ ବୋଧେ ଜାଣି ନାହିଁ ଯେ ହାରୋଲଡ ଆତ୍ମହତ୍ୟା କରିବାକୁ ଚେଷ୍ଟା କରୁଥିଲେ ।"

ମୁଁ କିନ୍ତୁ ତାଙ୍କ ପାଖକୁ ଯିବାବେଳକୁ ସେ ବିପଦମୁକ୍ତ ଥିଲେ । ସେହି ମୁହୂର୍ତ୍ତ କେତୋଟି ପାଇଁ ସବୁକିଛି ଠିକ୍‌ଠାକ୍ ଥିଲା ବୋଲି କହିଲେ ଚଳିବ । କିନ୍ତୁ ଡୋନାଲଡ୍, ଟିକିଏ କମ୍ ହେଲେ ମଧ୍ୟ, ହାର୍ଡିଙ୍କ ଭଳି ଜଣେ ସିଧାସଳଖ ଲୋକଥିଲେ । ତେଣୁ ହାର୍ଡିଙ୍କ ଆତ୍ମ ହତ୍ୟାର ଚେଷ୍ଟା ବିଫଳ ହେବା ଏକ ଦୁର୍ଯୋଗ ବୋଲି ସେ ଭାବୁଥିବାର ମତେ ଲାଗିଲା । ହାର୍ଡିଙ୍କ ସ୍ୱାସ୍ଥ୍ୟର ଅବନତି ତ ଘଟିଥିଲା ନିଶ୍ଚୟ । ଜଣାପଡିଯାଉଥିଲା ଯେ ସେ ଆଉ ବେଶୀ ଦିନ ବଞ୍ଚିବାର ନୁହଁ । ନିଜ ରୁମରୁ ଚାଲି ଚାଲି ବାହାରିବା ମଧ୍ୟ ତାଙ୍କ ପକ୍ଷରେ ଯନ୍ତ୍ରଣାଦାୟକ ଥିଲା । ସେ ସ୍ୱଇଚ୍ଛାରେ ହିଁ ସେ ଭଳି ଥରେ ଚେଷ୍ଟା କରିଥିଲେ । ଏକ ନିଷ୍କର୍ମା ଓ ନିଷ୍ଫଳ ଜୀବନ ତାଙ୍କ ପାଇଁ ଦୁଃସହ୍ୟ ଥିଲା । ସେ ତେଣୁ ଅନେକ ଗୁଡିଏ ନିଦ ବଟିକା ଏକାଥରକେ ଖାଇ ଦେଇଥିଲେ ।

ମତେ ଡୋନାଲଡ୍ ରବର୍ଟସନ ଲୋକ ଭାବରେ ବହୁତ ଭଲ ଲାଗନ୍ତି । ମୁଁ କିନ୍ତୁ ଆଗରୁ କେବଳ ଟ୍ରିନିଟି ହାଇଟେବୁଲ ଉପରେ ଭୋଜିଭାତ ସମୟରେ ତାଙ୍କୁ ଭେଟିବାର

ଯାହା ସୁଯୋଗ ପାଇଥିଲି । ପ୍ରଥମ ଥର ପାଇଁ ଆମେ ଜାଣ ଅନ୍ତରଙ୍ଗ ଭାବରେ କଥାବାର୍ତ୍ତା ହେଲୁ ।.ସେ ଖୁବ୍ ସମ୍ଭ୍ରମଭରା ଦୃଢ଼ତାର ସହ କହିଲେ ଯେ ମୁଁ ହାର୍ଡିଙ୍କୁ ଯେତେ ଥର ଭେଟିବା ସମ୍ଭବ ଭେଟିବା ଉଚିତ୍ । ଏଭଳି ସାକ୍ଷାତ ଯନ୍ତ୍ରଣାଦାୟକ ହେଲେ ମଧ୍ୟ, ଏହା ଏକ ଦାୟିତ୍ୱ । ପୁଣି ହାର୍ଡିଙ୍କ ସ୍ୱାସ୍ଥ୍ୟାବସ୍ଥା ଯାହା ହୁଏତ ବେଶିଦିନ ଏଭଳି କରିବାକୁ ପଡିବ ନାହିଁ । ଦୁହେଁ ଅତ୍ୟନ୍ତ ମର୍ମାହତ ଅନୁଭବ କରୁଥିଲୁ । ମୁଁ ସେଦିନ ବିଦାୟ ନେଇ ଆସିଲି । ତା'ପରେ ମୁଁ ତାଙ୍କୁ ଆଉ କେବେ ଭେଟି ନାହିଁ ।

ଏଭଲିନ୍ ନର୍ସିଂ ହୋମ୍‌ରେ ହାର୍ଡି ବେଡ୍‌ରେ ଶୋଇ ରହିଥାଆନ୍ତି । ସମୟର ପ୍ରହସନ ଭଳି ତାଙ୍କ ଉଜ୍ଜ୍ୱଳଦୀପ୍ତ ଆଖି ଗୁଡିକ କଳା ପଡିଯାଇଥାଏ । ନିଦ ବଟିକା ଗୁଡିକ ଖାଇବାପୂରେ ବାନ୍ତି ହେଲାବେଳେ ମୁଣ୍ଡଟି ଶୌଚଳୟ ବେସିନ୍‌ରେ ବାଡେଇହୋଇ ଯାଇଥାଏ । ସତେ ଯେପରି ସେ ଆତ୍ମ ଲାଞ୍ଛନାରେ ହିଁ ବୁଡି ଯାଇଥିଲେ । ସବୁକିଛି ଯେପରି ସେ ନିଜ ହାତରେ ହିଁ ଓଲଟପାଲଟ କରିଦେଇ ଥାଆନ୍ତି । ଆଉ କେହି ଏଭଳି ଗୋଳମାଳିଆ ଅବସ୍ଥା ସୃଷ୍ଟି କରିପାରିବ କି ନାହିଁ କହିବା ମୁସ୍କିଲ । ଏହି ପରିସ୍ଥିତିରେ ପରିବେଶକୁ ସାମାନ୍ୟ ହାଲୁକା କରିବା ପାଇଁ ମତେ ଗୋଟିଏ ବ୍ୟଙ୍ଗଭରା ଛଳ ଖେଳିବାକୁ ପଡିଥିଲା । ଆତ୍ମହତ୍ୟା କରିବାକୁ ଯାଇ ବିଫଳ ହୋଇଥିବା କିଛି ଜଣାଶୁଣା ଉଦାହରଣ କଥା ଆରମ୍ଭ କଲି । ଦ୍ୱିତୀୟ ମହାଯୁଦ୍ଧବେଳର ବେକ୍, ଷ୍ଟୁଲପ୍ନାଜେଲ ଭଳି ଜର୍ମାନୀ ସେନାଧକ୍ଷମାନେ ଆତ୍ମହତ୍ୟା ଚେଷ୍ଟାରେ ସମ୍ପୂର୍ଣ୍ଣ ଅପାରଗ ପ୍ରମାଣିତ ହୋଇଥିଲେ । ସେମାନଙ୍କ କଥା କହିଲା ବେଳେ ମତେ ଖୁବ୍ ଅସ୍ୱସ୍ତି ଲାଗୁଥାଏ । କିନ୍ତୁ ଆଶ୍ଚର୍ଯ୍ୟର କଥା ଏସବୁ ଶୁଣି ସେ ଟିକେ ସତେଜ ହେଉଥିଲା ଭଳି ଲାଗୁଥିଲା ।

ତା'ପରେ ମୁଁ ପ୍ରାୟ ପ୍ରତି ସପ୍ତାହରେ ଥରେ ଲେଖା କେମ୍ବ୍ରିଜ ଯାଉଥିଲି । ସବୁବେଳେ ମନରେ ଡର ଥାଏ । କିନ୍ତୁ ପ୍ରଥମେ ପ୍ରଥମେ ସେ ମତେ ଆଗକୁ ପୁଣି ଭେଟିବାକୁ ଚାହାନ୍ତି ବୋଲି କହୁଥିଲେ । ପ୍ରତ୍ୟେକ ଥର ସେ ମୃତ୍ୟୁ ବିଷୟରେ ଅଳ୍ପ କିଛି କିଛି କହୁଥିଲେ । ସେ ମୃତ୍ୟୁକୁ ହି ଚାହିଁ ବସିଥିଲା ଭଳି ଲାଗୁଥିଲା । ମୃତ୍ୟୁ ପ୍ରତି ତାଙ୍କର ଭୟ ନଥିଲା । ଶୂନ୍ୟତାକୁ ପୁଣି ଡର କ'ଣ ? ତାଙ୍କର କଠୋର ବୌଦ୍ଧିକ ସାହାସ ଫେରି ଆସିଥାଏ । ଭଲ ହୋଇଯାଇଥିଲେ ସେ ଆଉ କେବେ ହେଲେ ଆତ୍ମହତ୍ୟା କିରବାକୁ ଚେଷ୍ଟା କରି ନଥାନ୍ତେ । ଆତ୍ମହତ୍ୟା ବ୍ୟାପାରରେ ସେ ଯେ କୁଶଳୀ ନୁହଁନ୍ତି ସେ କଥା ସେ ଜାଣିପାରିଥିଲେ । ବରଂ ମୃତ୍ୟୁକୁ ଅପେକ୍ଷା କରିବାକୁ

ସେ ପ୍ରସ୍ତୁତ ଥିଲେ । ସେ ନିଜ ସ୍ୱାସ୍ଥ୍ୟାବସ୍ଥା ବିଷୟରେ ଅତିଶୟ ଉଦ୍‌ବିଗ୍ନ ହୋଇପଡ଼ୁଥିଲେ । ପ୍ରତିଦିନ ପ୍ରାୟ ସବୁବେଳେ ଆଣ୍ଠୁ ଫୁଲାକୁ ନିରୀକ୍ଷଣ କରୁଥିଲେ; ଫୁଲାଟା ବଢ଼ୁଛି ନା କମୁଛି । ଏଭଳି ଉଦ୍‌ବିଗ୍ନତା ତାଙ୍କ ଭଳି ଯୁକ୍ତିବାଦୀ ଦଳର ଜଣେ ପ୍ରମୁଖ ସଦସ୍ୟଙ୍କ ଚରିତ୍ର ସହ କେବେବି ଖାପ ଖାଉ ନଥିଲା ।

ତେବେ ତାଙ୍କ ସହ ରହିବା ବେଳେ ପ୍ରତି ଘଣ୍ଟାକରୁ ପଞ୍ଚାବନ ମିନିଟ ମୁଁ କ୍ରିକେଟ କଥା ହେଉଥିଲି । କେବଳ ସେ କଥା ହିଁ ତାଙ୍କୁ ଆଶ୍ୱସ୍ତ କରୁଥିଲା । ମତେ ଛଳନା କରିବାକୁ ପଡୁଥିଲା ଯେ ମୁଁ କ୍ରିକେଟକୁ ଖୁବ୍ ଭଲ ପାଏ । ପ୍ରକୃତରେ ମୋର କ୍ରିକେଟ ପ୍ରତି ସେଭଳି କିଛି ପ୍ରେମ ନଥିଲା । ଏପରିକି ତୃତୀୟଦଶକରେ ମଧ୍ୟ କ୍ରିକେଟ ପ୍ରତି ମୋ'ର କେବଳ ସାମାନ୍ୟ ମାତ୍ର ଆଗ୍ରହ ଥିଲା, ଖେଳ ଦେଖିବାକୁ ଯାଉଥିଲି କେବଳ ହାର୍ଡିଙ୍କ ସହ ସମୟ ବିତାଇବାର ଖୁସି ପାଇଁ । ବର୍ତ୍ତମାନ କିନ୍ତୁ ମତେ ସ୍କୁଲପିଲା ଭଳି କ୍ରିକେଟ ସ୍କୋର ସବୁ ଘୋଷିବାକୁ ପଡୁଥିଲା । ସେ ନିଜେ ପଢ଼ି ନପାରୁଥିଲେ ମଧ୍ୟ ମୁଁ ମିଛ କହିଲେ ସେ ଜାଣି ପାରୁଥିଲେ । ମଝିରେ ମଝିରେ ଅଳ୍ପ କିଛି ମୁହୂର୍ତ୍ତ ପାଇଁ ତାଙ୍କ ପୁରୁଣା ତେଜୀୟାନ ସ୍ୱଭାବ ଫୁଟି ଉଠୁଥିଲା । ମୁଁ ଯଦି ଆଉକିଛି ନୂଆ ପ୍ରଶ୍ନ ବା ପ୍ରସଙ୍ଗ ଉତ୍ଥାପନ କରୁନଥିଲି ତେବେ ସେ ଏକ ଅନ୍ଧକାରମୟ ନିରବତା ଭିତରେ ପଡି ରହିଲା ଭଳି ପଡି ରହୁଥିଲେ । କିଛି ଲୋକଙ୍କର ମୃତ୍ୟୁ ପୂର୍ବରୁ ଏହିଭଳି ହିଁ ଘଟେ ।

ଥରେ ଦି ଥର ମୁଁ ତାଙ୍କୁ ଉତ୍ସାହିତ କରିଥିଲି ସାଙ୍ଗ ହୋଇ କ୍ରିକେଟ ମ୍ୟାଚ୍ ଦେଖିବାକୁ ଯିବା ପାଇଁ । ଯଦିଓ ସେ ପ୍ରକାର ଅଭିଯାନ ପଛରେ କିଛି ବିପଦ ତ ନିଶ୍ଚୟ ଥିଲା । ମୁଁ କହିଲି ଯେ ମୁଁ ତ ପୂର୍ବ ଅପେକ୍ଷା ବେଶ୍ ଭଲ ଅଛି ଓ ଟ୍ୟାକ୍ସି ଖଣ୍ଡେ ବୁଝି ଦେଇପାରିବି । ଟ୍ୟାକ୍ସି ତାଙ୍କ ଗମନାଗମନର ପ୍ରିୟ ମାଧ୍ୟମ ରହି ଆସିଥିଲା । ସେ ଯୋଉ କ୍ରିକେଟ ପଡିଆ କହିବେ ସେଠାକୁ ଯାଇପାରିବେ । କଥାଟା ଶୁଣି ଟିକେ ଖୁସି ହେଲା ଭଳି ଲାଗିଲେ । କହିଲେ "ତୁମେ ଭୁଲି ଯାଉଛ ଯେ ଜଣେ ମଲା ବ୍ୟକ୍ତିକୁ ନିଜ ପାଖରେ ପାଇପାର ।" ମୁଁ କହିଲି, "ସେଥିପାଇଁ ମୁଁ ପ୍ରସ୍ତୁତ" । ମୁଁ ଭାବୁଥିଲି ସେ ହୁଏତ ମୋ' ସହିତ ଆସିବେ । ସେ ଓ ମୁଁ ଉଭୟ ଜାଣିଥିଲୁ ଯେ ତାଙ୍କ ମୃତ୍ୟୁ ଆଉ ମାସ କେତେଟାର କଥା । ତେଣୁ ମୁଁ ଚାହୁଁଥିଲି ଅନ୍ତତଃ ଗୋଟିଏ ଅପରାହ୍ନ ତାଙ୍କର ଆନନ୍ଦରେ କଟୁ । ତା'ପରେ ଦେଖା ସାକ୍ଷାତ ଗୁଡ଼ିକରେ, ସେ ମତେ ଦେଖୁ ଦେଖୁ ଦୁଃଖ ଓ ରାଗରେ ମୁଣ୍ଡ ହଲାଇ ଚାଲିଲେ । ଏହାର ଉଦ୍ଦେଶ୍ୟ

ହେଲା ଯେ ନା', ସେ ଏବେ ଆଉ କେଉଁଠାକୁ ଖେଳ ଦେଖି ଯିବାର ଚେଷ୍ଟା ବି କରିବେ ନାହିଁ । ଚେଷ୍ଟାର ଆଉ କୌଣସି ଅର୍ଥ ନାହିଁ ।

ମୋ ପକ୍ଷରେ କ୍ରିକେଟ ବିଷୟରେ ଗପିବା ବହୁତ କଷ୍ଟକର ଥିଲା । ତାଙ୍କ ଭଉଣୀଙ୍କ ପକ୍ଷରେ ମୋ'ଠାରୁ ଆହୁରି କଷ୍ଟକର । ତାଙ୍କ ଭଉଣୀ ଜଣେ ସୁନ୍ଦରୀ ବୁଦ୍ଧିମତୀ ଭଦ୍ରମହିଳା ଥିଲେ । ବିବାହ କରି ନଥିଲେ । ଜୀବନର ଅଧିକାଂଶ ସମୟ ଭାଇଙ୍କ ଦେଖାଶୁଣା କରୁଥିଲେ । ସେ କ୍ରିକେଟର ଧାର ଧାରୁ ନଥିଲେ । କିନ୍ତୁ ବର୍ତ୍ତମାନ ଭାଇଙ୍କ ପାଇଁ କ୍ରିକେଟର ଟିକିନିଖି ଖବର ସଂଗ୍ରହ କରି ରଖୁଥିଲେ ।

ଥରେ ଅଧେ ତାଙ୍କ ମୁହଁରୁ ମଣିଷ ଜୀବନରେ ଅଳିକ ଆନନ୍ଦ ପ୍ରତି ବ୍ୟଙ୍ଗ ବିଦ୍ରୂପ ମଧ୍ୟ ବାହାରି ପଡୁଥିଲା । ମରିବାର ଦୁଇ ତିନି ସପ୍ତାହ ପୂର୍ବରୁ ସେ ଶୁଣିଲେ ଯେ ରୟାଲ ସୋସାଇଟିର ସର୍ବୋଚ୍ଚ ସମ୍ମାନ କୋପଲେ ମେଡାଲ ତାଙ୍କୁ ଦିଆଯିବା ପାଇଁ ନିଷ୍ପତ୍ତି ନିଆଯାଇଛି । ତାଙ୍କ ମୁଖମଣ୍ଡଳରେ ମେଫିଷ୍ଟୋଫିଲିୟ (ବିଦ୍ରୂପ ଭରା) ହସଟିଏ ଖେଳିଗଲା । ଅନେକ ମାସ ପରେ ସେଭଳି ହସଟିକୁ ପୂର୍ଣ୍ଣ ଶୋଭାସହ ମତେ ଦେଖିବାକୁ ମିଳିଲା । କହି ଉଠିଲେ, "ଏବେ ମୋର ଶେଷ ସମୟ ହୋଇଗଲା ବୋଲି ଜାଣିପାରୁଛି । ଯେତେବେଳେ ଲୋକମାନେ ତରବର ହୋଇ ତୁମକୁ କୌଣସି ସମ୍ମାନରେ ଭୂଷିତ କରିବାକୁ ତତ୍ପର ହୋଇ ଉଠିବେ, ଜାଣିବ ଯେ ତୁମର ଶେଷ ସମୟ ପାଖେଇ ଆସିଲା ।"

ଏହି ଘଟଣା ପରେ ମୁଁ ବୋଧହୁଏ ତାଙ୍କ ପାଖକୁ ଆଉ ଦୁଇଥର ଯାଇଛି । ଶେଷ ଥର ଯାଇଥିଲି ତାଙ୍କ ମୃତ୍ୟୁର ଚାରି-ପାଞ୍ଚ ଦିନ ପୂର୍ବରୁ । ସେତେବେଳେ ଅଷ୍ଟ୍ରେଲିଆରେ କ୍ରିକେଟ ଖେଳୁଥିବା ଭାରତୀୟ ଦଳ ବିଷୟରେ ଆମେ କଥା ହୋଇଥିଲୁ ।

ସେହି ସପ୍ତାହରେ ସେ ତାଙ୍କ ଭଉଣୀଙ୍କୁ କହିଥିଲେ ଯେ, "ଯଦି ମୁଁ ଆଜି ମରିବି, କ୍ରିକେଟ ସ୍କୋର ଶୁଣିକି ହିଁ ମରିବି ।"

ପ୍ରକୃତରେ ବି ସେୟାହିଁ ହେଲା । ପ୍ରତି ସନ୍ଧ୍ୟାରେ ତାଙ୍କ ଭଉଣୀ କେମ୍ବ୍ରିଜ ବିଶ୍ୱବିଦ୍ୟାଳୟର କ୍ରିକେଟ ଇତିହାସ ବହିରୁ ଅଧ୍ୟାୟଟିଏ ପଢ଼ି ଶୁଣାଉଥିଲେ । ଏହିଭଳି ଏକ ଅଧ୍ୟାୟ ହିଁ ସେ ଶେଷଥର ପାଇଁ ଶୁଣିଥିଲେ । ପରଦିନ ପ୍ରାତଃ କାଳରେ ସେ ହଠାତ୍ ଆର ପାରିକୁ ଚାଲିଗଲେ ।

ସ୍ନୁ . ପି . ସ୍ନୋ

# ମୁଖବନ୍ଧ

ମୁଁ ପ୍ରଫେସର ସି.ଡି.ବ୍ରଡ୍ ଓ ଡଃ ସି.ପି.ସ୍ନୋଙ୍କ ନିକଟରେ ସେମାନଙ୍କର ବହୁମୂଲ୍ୟ ସମାଲୋଚନା ପାଇଁ ଋଣୀ । ଉଭୟ ମୋର ମୂଳ ପାଣ୍ଡୁଲିପିଟିକୁ ପଢ଼ିଛନ୍ତି । ମୁଁ ସେମାନଙ୍କର ପ୍ରାୟ ସବୁ ପ୍ରସ୍ତାବ ଗୁଡିକର ସାରକଥାକୁ ମୋ ଲେଖାମଧ୍ୟରେ ସ୍ଥାନ ଦେଇଛି । ତା ଦ୍ୱାରା ମୋ' ଲେଖାରୁ ଅନେକ ରୁଚିହୀନତା ଓ ଅପରିଚ୍ଛନ୍ନତା ଦୂର ହୋଇପାରିଛି ।

ଗୋଟିଏ କ୍ଷେତ୍ରରେ କିନ୍ତୁ ଏହାର ଟିକେ ବ୍ୟତିକ୍ରମ ଘଟିଛି । ମୋର ଅଠେଇଶତମ ପରିଚ୍ଛେଦଟି (୨୮) ଏହି ବର୍ଷ ପ୍ରାରମ୍ଭରେ "ୟୁରେକା" ପତ୍ରିକାକୁ ଦେଇଥିବା ଗୋଟିଏ ଛୋଟ ପ୍ରବନ୍ଧ ଉପରେ ପର୍ଯ୍ୟବେଶିତ । ଏତେ ଅଳ୍ପଦିନ ତଳେ ଓ ଏତେ ଯତ୍ନର ସହ ଲେଖିଥିବା ଲେଖାକୁ ଅନ୍ୟରୂପ ଦେବା ମୋ' ପକ୍ଷରେ ସମ୍ଭବ ହେଲା ନାହିଁ । ତା'ପରେ ମୁଁ ଯଦି ଏତେଗୁଡିଏ ଗୁରୁତ୍ୱପୂର୍ଣ୍ଣ ସମାଲୋଚନାର ଯୁକ୍ତିଯୁକ୍ତ ଉତ୍ତର ଦେବାକୁ ଚେଷ୍ଟା କରିଥାଆନ୍ତି ତେବେ ଏ ପରିଚ୍ଛେଦଟି ଏପରି ଭାବରେ ପରିବର୍ଦ୍ଧିତ ଓ ପରିବର୍ତ୍ତିତ ହୋଇଯାଇଥାଆନ୍ତା ଯେ ମୋ' ସମ୍ପୂର୍ଣ୍ଣ ପ୍ରବନ୍ଧର ଭାରସାମ୍ୟ ନଷ୍ଟ ହୋଇଯାଇଥାଆନ୍ତା । ମୁଁ ତେଣୁ ପରିଚ୍ଛେଦଟିକୁ ଅପରିବର୍ତ୍ତିତ ରଖିଛି । କିନ୍ତୁ ମୋ' ସମାଲୋଚକମାନଙ୍କର ମୁଖ୍ୟ ବକ୍ତବ୍ୟ ଉପରେ ମୋର ପ୍ରତିକ୍ରିୟା ଛୋଟ ଟିପ୍ପଣୀ ମାଧ୍ୟମରେ ବହିର ଶେଷ ଭାଗରେ ଉପସ୍ଥାପନ କରିଛି । ଭାବୁଛି ମୋ ଭାବନାକୁ ଅନ୍ୟମାନଙ୍କ ପାଖରେ ସ୍ୱଷ୍ଟ ଭାବରେ ଥୋଇବା ପାଇଁ ସେତକ ଯଥେଷ୍ଟ ।

ଜି.ଏଚ୍. ଏଚ୍.

# ଜଣେ ଗଣିତଜ୍ଞର ଆତ୍ମଚିନ୍ତନ

ଜଣେ ବୃତ୍ତିନିଷ୍ଠ ଗଣିତଜ୍ଞ ପକ୍ଷରେ ଗଣିତ ବିଷୟରେ ଆଲୋଚନା କରିବା ଏକ ଅବସାଦଭରା ବିଷର୍ଣ୍ଣ ଅନୁଭୂତି । ଜଣେ ଗଣିତଜ୍ଞର କାମ ହେଲା କିଛି କରିବା; ନୂଆ ଉପପାଦ୍ୟ ପ୍ରମାଣ କରିବା, ଗଣିତକୁ ନୂଆ କିଛି ଦେବା । ନିଜେ କ'ଣ କରିଛି ବା ଅନ୍ୟ ଗଣିତଜ୍ଞ କ'ଣ କରିଛନ୍ତି ସେ ବିଷୟ ବଖାଣିବା ନୁହେଁ । ରାଷ୍ଟ୍ରନେତାମାନେ ରାଜନୈତିକ ବ୍ୟାଖ୍ୟାକାରଙ୍କୁ ହେୟଜ୍ଞାନ କରନ୍ତି; ଚିତ୍ରକରମାନେ ମଧ୍ୟ କଳା ସମୀକ୍ଷକଙ୍କୁ । ବୈଜ୍ଞାନିକ ଓ ଗଣିତଜ୍ଞଙ୍କ କ୍ଷେତ୍ରରେ ମଧ୍ୟ ସେହି ଏକା କଥା । ଜଣେ ଲୋକର ତା' ନିଜ କାର୍ଯ୍ୟାବଳୀର ସମୀକ୍ଷା କରୁଥିବା ଲୋକ ପ୍ରତି ହେୟଭାବ ବେଶ୍ ଗଭୀର । ତା'ମତରେ ବ୍ୟାଖ୍ୟା, ସମୀକ୍ଷା ବା ପ୍ରଶଂସାଦି କେବଳ ଏକ ଦ୍ୱିତୀୟ-ସ୍ତର ମସ୍ତିଷ୍କର ପ୍ରବୃତ୍ତି ।

ହାଉସ୍‌ମ୍ୟାନଙ୍କ ସହ ମୋ'ର ଅଳ୍ପ କେତୋଟି ଗୁରୁତ୍ୱପୂର୍ଣ୍ଣ ଆଲୋଚନା ମଧ୍ୟରୁ ଥରେ ଏହି ପ୍ରସଙ୍ଗ ଉପରେ ଆଲୋଚନା କରିବାର ମନେ ଅଛି । ହାଉସମ୍ୟାନ "କାବ୍ୟ କବିତାର ନାମ ଓ ପ୍ରକୃତି" ଶୀର୍ଷକ ଲେସ୍‌ଲି ଷ୍ଟିଫେନ ବକ୍ତୃତାରେ ନିଜେ ଜଣେ "ସମୀକ୍ଷକ" ନୁହଁନ୍ତି ବୋଲି ଦୃଢ଼ତାର ସହ ଘୋଷଣା କରିଥିଲେ । କିନ୍ତୁ ତାଙ୍କର ଏକ ଅସ୍ୱୀକାରୋକ୍ତି ମୂଳରେ ଥିବା ଯୁକ୍ତି ମତେ ସମ୍ପୂର୍ଣ୍ଣ ଉଦ୍ଭଟ ବୋଧହେଲା । ସେ ତାଙ୍କ ବକ୍ତୃତାରେ ସାହିତ୍ୟ ସମୀକ୍ଷାକୁ ଏପରି ପ୍ରଶଂସା କଲେ ଯାହା ମତେ ଆଶ୍ଚର୍ଯ୍ୟଚକିତ କରିବା ସହ ମୋର ଆତ୍ମାକୁ ବହୁତ କଷ୍ଟ ଦେଇଥିଲା ।

ସେ ମହାଶୟ ନିଜ ପ୍ରଦତ୍ତ ବାଇଶବର୍ଷ ତଳର ବକ୍ତୃତାରୁ ଉଦ୍ଧାର କରି ତାଙ୍କ ବକ୍ତବ୍ୟଟି ନିମ୍ନୋକ୍ତ ଭାବରେ ଆରମ୍ଭ କରିଥିଲେ । "ସାହିତ୍ୟ ସମୀକ୍ଷାର ସାମର୍ଥ୍ୟ ଭଗବାନଙ୍କ ପାଖରେ ଗଚ୍ଛିତ ଦାନମାନଙ୍କ ମଧ୍ୟରେ ସର୍ବୋତ୍ତମ କି ନା, ମୁଁ କହିପାରିବି ନାହିଁ । କିନ୍ତୁ ଭଗବାନ ଏପରି ଭାବୁଥିବାର ମତେ ଲାଗୁଛି କାରଣ ଏହି ଦାନଟି ଦେବାରେ ନିଶ୍ଚିତ ଭାବରେ ସେ ଅତ୍ୟନ୍ତ କୃପଣ । ବକ୍ତା, କବି ଇତ୍ୟାଦି ଫୁଲ୍‌ଫଳ

ତୁଳନାରେ ବିରଳ ହେଲେ ମଧ୍ୟ ହାଲି ଧୂମକେତୁର ବିଳମ୍ବିତ ପୁନଃପୁନଃ ଆବିର୍ଭାବ ତୁଳନାରେ ତ ନିଶ୍ଚୟ ଅଧିକ ସୁଲଭ । ସାହିତ୍ୟ ସମୀକ୍ଷକ କିନ୍ତୁ ତୁଳନାତ୍ମକ ଭାବରେ ଅଧିକ ଦୁର୍ଲ୍ଲଭ... । ଏହି ବାଇଶବର୍ଷ ଭିତରେ ମୁଁ କିଛି କ୍ଷେତ୍ରରେ ଉନ୍ନତି କରିଥିଲା ବେଳେ ଅନ୍ୟ କିଛି କ୍ଷେତ୍ରରେ ଅବନତି କରିଛି କିନ୍ତୁ ଏଭଳି କିଛି ଉନ୍ନତି କରିନାହିଁ ଯାହାକି ମତେ ଜଣେ ସାହିତ୍ୟ ସମୀକ୍ଷକର ପରିଚୟ ଦେବ, କି ଏଭଳି ଅବନତି କରିନାହିଁ ଯେ ନିଜକୁ ଜଣେ ସାହିତ୍ୟ ସମୀକ୍ଷକ ହୋଇଯାଇଛି ବୋଲି ଆତ୍ମବଡିମାରେ ବୁଡାଇଦେବି ।"

ଜଣେ ବିଶିଷ୍ଟ ଜ୍ଞାନୀ ଓ ସୁନ୍ଦର କବିଙ୍କ ପକ୍ଷରେ ଏପରି ଲେଖିବା ଏକ ନିନ୍ଦନୀୟ କଥା ବୋଲି ମତେ ଲାଗିଲା । କିଛି ସପ୍ତାହର ବ୍ୟବଧାନ ପରେ ତାଙ୍କୁ ନିକଟରେ ପାଇ ମୋ ମନ କଥା ତାଙ୍କୁ ଜଣାଇଲି । ମୁଁ ପଚାରିଲି, "ଆପଣ କ'ଣ ସତରେ ଭାବୁଛନ୍ତି ଅନ୍ୟମାନେ ଆପଣଙ୍କ କଥାଟିକୁ ଗୁରୁତ୍ୱର ସହ ଗ୍ରହଣ କରନ୍ତୁ ? ଆପଣ କ'ଣ ପ୍ରକୃତରେ ଜଣେ ସମୀକ୍ଷକ, ଜଣେ ଜ୍ଞାନୀ ବା ଜଣେ କବି ସହ ତୁଳନୀୟ ବୋଲି ଭାବୁଛନ୍ତି ?" ରାତ୍ରି ଭୋଜନ ଶେଷ ପର୍ଯ୍ୟନ୍ତ ଆମେ ଏହାରି ଉପରେ ହିଁ ଆଲୋଚନା କରି ଚାଲିଲୁ । ଶେଷରେ ସେ ମୋ ସହିତ ଏକମତ ହେଲେ ବୋଲି ମତେ ଲାଗିଲା । ମୋ ଯୁକ୍ତିକୁ ଖଣ୍ଡନ କିର ପାରୁ ନଥିବା ଜଣେ ବ୍ୟକ୍ତି ଉପରେ ମୋ'ର ଯେ ଏକ ସମ୍ପୂର୍ଣ୍ଣ ବିଜୟ ହୋଇଗଲା ତାହା ମୁଁ କହି ପାରିବିନି । କିନ୍ତୁ "ବୋଧହୁଏ ସମ୍ପୂର୍ଣ୍ଣ ଭାବରେ ନୁହେଁ" ଥିଲା ତାଙ୍କର ଶେଷ ଉତ୍ତର ମୋ'ର ପ୍ରଥମ ପ୍ରଶ୍ନ ପାଇଁ ଓ "ସମ୍ଭବତଃ ନୁହେଁ" ଥିଲା ଦ୍ୱିତୀୟ ପ୍ରଶ୍ନଟି ଲାଗି ।

ହାଉସମ୍ୟାନଙ୍କ ପ୍ରକୃତ ମନର କଥା କ'ଣ କହିବା ଦୁରୁହ ବ୍ୟାପାର । ସେ ମତେ ସମର୍ଥନ କରୁଥିଲେ ବୋଲି ମୁଁ ଦାବି କରି ପାରିବିନି । କିନ୍ତୁ ବୈଜ୍ଞାନିକମାନଙ୍କ ଚିନ୍ତାଧାରା ଉପରେ ମୋର କୌଣସି ସନ୍ଦେହ ନାହିଁ । ସେମାନଙ୍କ ମତ ହିଁ ମୋ'ର ମତ । ତେଣୁ ଗଣିତ ନ କରି ଗଣିତ ବିଷୟରେ ଲେଖିବାକୁ ଉଦ୍ୟତ ହେବା ମୋ'ର ଏକ ଦୁର୍ବଳତାର ସ୍ୱାକ୍ଷର ଭାବରେ ଗ୍ରହଣ କରାଯାଇପାରେ । ସେଥିପାଇଁ ମୁଁ ଉଚ୍ଚ ତଥା ନର୍ମଳ ଗଣିତ ସୃଷ୍ଟିରେ ନିମଗ୍ନ ଗଣିତଜ୍ଞଙ୍କ ହେୟଜ୍ଞାନ ତଥା ଦୟାର ପାତ୍ର ବି ହୋଇପାରେ । ମୁଁ ଆଜି ଗଣିତ ବିଷୟରେ ଲେଖିବାର କାରଣ ହେଲା ମୁଁ ଷାଠିଏ ବର୍ଷ ଅତିକ୍ରମ କରିଛି । ଷାଠିଏ ବର୍ଷ ଅତିକ୍ରମ କରିଥିବା ପ୍ରତ୍ୟେକଟି ଗଣିତଜ୍ଞଙ୍କ

ଭଳି ଗଣିତରେ ନୂତନତା ଭରି ଦେବା ପାଇଁ ଆବଶ୍ୟକ ମାନସିକ ସତେଜତା, ଶକ୍ତି ଓ ଧୈର୍ଯ୍ୟ ମୋ ପାଖରେ ଆଉ ନାହିଁ ।

(୨)

ମୁଁ ଗଣିତ ଗବେଷଣା କରିବା ପଛରେ ଥିବା କାରଣଟି ବିଷୟରେ କହିବାକୁ ଯାଉଛି । ହୁଏତ ଏହାର ଆବଶ୍ୟକତା ନାହିଁ । କାରଣ ଠିକ୍ ହେଉ ବା ଭୁଲ ହେଉ ଗଣିତ ଭଳି ଅନ୍ୟ କୌଣସି ବିଷୟରେ ଅଧ୍ୟୟନ ଏତେ ଲାଭଦାୟକ ତଥା ପ୍ରଶଂସନୀୟ ଭାବରେ ଜନ ସ୍ୱୀକୃତି ପାଇନାହିଁ । କେବଳ ଆଇନଷ୍ଟାଇନଙ୍କ ଚମକପ୍ରଦ ସଫଳତା ପରେ ବୋଧହୁଏ ଜ୍ୟୋତିର୍ବିଜ୍ଞାନ ଓ ଅଣୁ ବିଜ୍ଞାନ ଜନମାନସରେ ଗଣିତ ଠାରୁ ଉଚ୍ଚତର ଆସନ ଲାଭ କରିପାରିଛନ୍ତି । ସେହି ଦୃଷ୍ଟିରୁ ଆଜି ଜଣେ ଗଣିତଜ୍ଞ ନିଜ ତରଫରୁ କୌଣସି ସଫେଇ ଦେବାର ଆବଶ୍ୟକତା ନାହିଁ । ବ୍ରାଡଲେ ଯେପରି "ରୂପ ଓ ରତ" ପୁସ୍ତକର ଉପକ୍ରମଣିକାରେ ଅଧିଭୌତିକତାକୁ ବାହ୍ୟଆକ୍ରମଣରୁ ପ୍ରଶଂସନୀୟ ସୁରକ୍ଷା ପ୍ରଦାନ କରିଥିଲେ, ଜଣେ ଗଣିଜ୍ଞକୁ ଆଜି ସେପରି ବିରୋଧର ସମ୍ମୁଖୀନ ହେବାକୁ ପଡୁନାହିଁ । ସୁରକ୍ଷା ପ୍ରଦାନର ପ୍ରଶ୍ନ ବି ଉଠୁନାହିଁ ।

ବ୍ରାଡଲେ କହିଥିଲେ ଯେ ଜଣେ ଅଧିଭୌତିକବାଦୀକୁ ଅନେକ ବିଦ୍ରୂପ ଶୁଣିବାକୁ ପଡେ । ଯଥା, "ଅଧିଭୌତିକ ଜ୍ଞାନ ବୋଲି କିଛି ନାହିଁ । ଆଉ ଯଦି ବା କିଛି ଅଛି, ତାହା ଜ୍ଞାନ ପଦବାଚ୍ୟ ନୁହେଁ ।" ପୁଣି, "ସେହି ଏକା ସମସ୍ୟା, ଏକା ବିବାଦ ଓ ସେହି ଏକା ବିଫଳତା । ପୁରା ଜିନିଷଟାକୁ ଛାଡିଦେଇ ବାହାରି ଆସୁନ କାହିଁକି ? ନିଜ ପରିଶ୍ରମଯୋଗ୍ୟ ଆଉ କିଛି ଭଲ ଜିନିଷ କ'ଣ ନାହିଁ ?" ଇତ୍ୟାଦି ଇତ୍ୟାଦି । କିନ୍ତୁ ଗଣିତ ବିଷୟରେ ଏପରି ଭାଷା ବ୍ୟବହାର କଲାଭଳି ମୂର୍ଖ ନାହାନ୍ତି । ଗଣିତର କିର୍ତ୍ତୀରାଜି ସୁଦୃଶ୍ୟ ଓ ବିରାଟ । ଏହାର ପ୍ରୟୋଗାତ୍ମକ ବ୍ୟବହାରକ୍ଷେତ୍ର ଯଥା ରେଳଇଞ୍ଜିନ, ଡାଇନାମୋ ଓ କାରିଗରୀପୂର୍ଣ୍ଣ ସେତୁ ସମୁହ ନ୍ୟୁନତମ ଚେତନାରେ ମଧ୍ୟ ଛାପ ଛାଡିବାକୁ ସକ୍ଷମ । ଗଣିତରେ ଯେ ସାର ଅଛି ଏ ବିଷୟରେ ସାଧାରଣ ଲୋକଟିକୁ ବୁଝାଇବାର ଆବଶ୍ୟକତା ନାହିଁ ।

ଏସବୁ କଥା ଗଣିତଜ୍ଞଙ୍କ ପାଇଁ ଖୁବ୍ ସାନ୍ତ୍ୱନାଦାୟକ । କିନ୍ତୁ ଜଣେ ସଚ୍ଚା ଗଣିତଜ୍ଞ ଏତିକିରେ ସନ୍ତୁଷ୍ଟ ହୋଇ ରହିପାରିବ ନାହିଁ । ସେ ମନେରଖିବା ଉଚିତ୍ ଯେ ଗଣିତର ସାରକଥା ଲୋକଦେଖାଣିଆ ସଫଳତା ଉପରେ ପର୍ଯ୍ୟବେଶିତ ନୁହେଁ;

ଜନମାନସରେ ଗଣିତର ସମ୍ମାନ ଅନେକାଂଶରେ ଅଜ୍ଞତା ଓ ଗୋଳମାଳିଆ ବୁଝାମଣା ଉପରେ ପ୍ରତିଷ୍ଠିତ । ତେଣୁ ଗଣିତ ଏକ ଉଚ୍ଚତର ବୌଦ୍ଧିକ ସୁରକ୍ଷା ଆବଶ୍ୟକ କରେ । ମୁଁ ଅନ୍ତତଃ ସେଇଆହିଁ କରିବାକୁ ଉଦ୍ୟତ । ଆଶାକରୁଛି ବ୍ରାଡଲେଙ୍କ କଷ୍ଟସାଧ ପ୍ରତିରକ୍ଷା ତୁଳନାରେ ମୋ' କାମଟି ସରଳ ହେବ ।

ମୁଁ ତେଣୁ ପଚାରିବାକୁ ଚାହେଁ ଗଣିତର ଗଭୀର ଅଧ୍ୟୟନର ଆବଶ୍ୟକତା କ'ଣ ? ଜଣେ ଗଣିତଜ୍ଞ ଜୀବନର ପ୍ରକୃତ ଯଥାର୍ଥତା କ'ଣ ? ମୋ' ଉତ୍ତର ଅନ୍ୟ ସମସ୍ତ ଗଣିତଜ୍ଞଙ୍କ ଠାରୁ ଆଶା କରାଯାଉଥିବା ଉତ୍ତର ସହ ମୋଟାମୋଟି ଭାବରେ ମିଶିଯିବ । ଏସବୁ କାର୍ଯ୍ୟ ଅନ୍ତରାଳରେ ଏକ ସରଳ ଯଥାର୍ଥତା ଥିବା ହିଁ ମୋ ମତରେ ଏକ ମହତ୍ତ୍ୱପୂର୍ଣ୍ଣ କଥା । ମୁଁ ପ୍ରଥମରୁ କହି ରଖୁଛି ଯେ ଗଣିତ ପ୍ରତିରକ୍ଷାରେ ଯାହା କିଛି କହିବି ସେ ମଧ୍ୟ ହେବ ମୋ ଆତ୍ମରକ୍ଷା ଓ କିଛି ମାତ୍ରାରେ ଆତ୍ମବଡିମାପୂର୍ଣ୍ଣ । କାରଣ ମୁଁ ନିଜକୁ ଗଣିତ କ୍ଷେତ୍ରରେ ବିଫଳ ବୋଲି ଭାବିଥିଲେ ଗଣିତ ସପକ୍ଷରେ ଯୁକ୍ତି ବାଢ଼ିବାକୁ ଉଦ୍ୟତ ହୋଇନଥାନ୍ତି ।

ଏହି ଧରଣର କିଛି ଆତ୍ମପ୍ରଶଂସା ହୁଏତ ଅବଶ୍ୟମ୍ଭାବୀ । ତାହା ସପକ୍ଷରେ କୌଣସି ଯୁକ୍ତିର ବି ଆବଶ୍ୟକତା ନାହିଁ । "ମାଛିକୁ ମ ନକହୁଥିବା" ଲୋକମାନଙ୍କ ଦ୍ୱାରା କୌଣସି ଭଲକାମ ସମ୍ଭବ ହୁଏ ନାହିଁ । ଉଦାହରଣ ସ୍ୱରୂପ ଜଣେ ଅଧ୍ୟାପକଙ୍କର ନିଜ ବିଷୟ ତଥା ସେଥିରେ ନିଜର ପ୍ରତିଷ୍ଠା ବିଷୟରେ ସାମାନ୍ୟ ଅତିଶୟୋକ୍ତି କରିବା ନିହାତି ଆବଶ୍ୟକ । ଯେଉଁ ଲୋକ, "ମୁଁ ଯାହା କରୁଛି କରିବା ଉଚିତ୍ କି ?" ଓ "ମୁଁ ଏ କାମ ପାଇଁ ଉପଯୁକ୍ତ କି ?" ଭଳି ପ୍ରଶ୍ନାଦି ଦ୍ୱାରା ଉତ୍ପିଡ଼ିତ ସେ ନିଜେ ତ କୌଣସି କାର୍ଯ୍ୟରେ ପ୍ରଭାବୀ ପ୍ରଦର୍ଶନ ରଖିପାରେ ନାହିଁ । ବରଂ ସେ ଅନ୍ୟମାନଙ୍କୁ ନିରୁତ୍ସାହିତ କରେ । ସେ ଆଖି ବନ୍ଦ କରି ନିଜ ବିଷୟ ଓ ନିଜ ଉପରେ ଟିକେ ଅଧିକ ବିଶ୍ୱାସ ସ୍ଥାପନ କିରବା ଉଚିତ । ଏହା ଏକ ବିଶେଷ କଷ୍ଟ କାମ ନୁହେଁ; ବରଂ ନିଜ ବିଷୟକୁ ଓ ନିଜକୁ ଅନ୍ୟମାନଙ୍କ ଦୃଷ୍ଟିରେ ଅପମାନିତ କରାଇବା ଠାରୁ ସହଜ ।

(୩)

ଯେଉଁ ବ୍ୟକ୍ତି ନିଜ ଜୀବନ ଓ କର୍ମର ଯଥାର୍ଥତା ପ୍ରତିପାଦନ କରିବାକୁ ଆଗଭର ହେବ ତା'ର ଦୁଇଟି ପ୍ରସଙ୍ଗ ମଧ୍ୟରେ ପାର୍ଥକ୍ୟ ଭଲଭାବେ ହୃଦୟଙ୍ଗମ କରିବା ଉଚିତ୍ । ଯଥା, "ସେ ଯାହା କରୁଛି ତାହା କରଣୀୟ କି ?" ଓ "ସେ କାହିଁକି

ତାହାକୁ କରୁଛି ?" ପ୍ରଥମ ପ୍ରଶ୍ନଟି ଖୁବ୍ ଜଟିଳ ଓ ଉତ୍ତର ମଧ୍ୟ ଅତ୍ୟନ୍ତ ସଂଶୟପୂର୍ଣ୍ଣ । ଅଧିକାଂଶ ଲୋକଙ୍କୁ ଦ୍ୱିତୀୟ ପ୍ରଶ୍ନଟି ସହଜ ଲାଗିବ । ଯଦି ସେମାନେ ସତ୍ୟନିଷ୍ଠ ହୋଇଥିବେ ତେବେ ଦ୍ୱିତୀୟ ପ୍ରଶ୍ନଟିର ଉତ୍ତର ଦୁଇଟି ରୂପ ନେଇପାରେ । ଦ୍ୱିତୀୟ ରୂପଟି ପୁଣି ପ୍ରଥମ ରୂପର ଏକ ସହଜିଆ ରୂପାନ୍ତର । ତେଣୁ ଦ୍ୱିତୀୟ ପ୍ରଶ୍ନର ପ୍ରଥମ ଉତ୍ତରଟିକୁ ହିଁ ଗୁରୁତ୍ୱର ସହ ବିଚାର କରାଯାଇପାରେ ।

(୧) ସେହି ଉତ୍ତରଟି ହେଲା; "ମୋର ଗୋଟିଏ କାର୍ଯ୍ୟରେ ଲିପ୍ତ ହେବାର ମୁଖ୍ୟ କାରଣ ହେଲା କେବଳ ସେହି କାମଟିକୁ ହିଁ ମୁଁ ଭଲ ଭାବରେ କରିପାରିବି । ସେହି କାର୍ଯ୍ୟ ସମ୍ପାଦନ ପାଇଁ ମୋର ଅନ୍ତର୍ନିହିତ ଶକ୍ତି ଅଛି ବୋଲି ମୁଁ ଅନୁଭବ କରେ । ମୁଁ ଓକିଲାତି କରେ କାରଣ ମୁଁ ଅନର୍ଗଳ ଗପିପାରେ ଓ ନିୟମକାନୁନ ବିଷୟରେ ମୋର ସ୍ପୃହା ଅଛି । ମୁଁ ଷ୍ଟକ୍‌ଦଲାଲୀ କରୁଛି କାରଣ ମୋର ବଜାର ଅନୁଧ୍ୟାନ କରିବାର ଶକ୍ତି ଖୁବ୍ କ୍ଷୀପ୍ର ଓ ତ୍ରୁଟିହୀନ । ମୁଁ କ୍ରିକେଟ ଖେଳୁଛି କାରଣ ମୁଁ ଅତି ସୁନ୍ଦର ଭାବରେ ବ୍ୟାଟିଂ କରିପାରେ । ମାନୁଛି ଯେ ଜଣେ କବି ବା ଗଣିତଜ୍ଞ ହେବା ହୁଏତ ଅଧିକ ସମ୍ମାନର କଥା ହୋଇଥାଆନ୍ତା । କିନ୍ତୁ ସେ ପ୍ରକାର ପ୍ରତିଭା ମୋ ଭିତରେ ନାହିଁ ।"

ଏ ପ୍ରକାର ପ୍ରତିରକ୍ଷାର ଢ଼ାଲ ଯେ ସମସ୍ତେ ବ୍ୟବହାର କରିପାରିବେ ସେ କଥା ମୁଁ କହୁନାହିଁ କାରଣ ଅଧିକାଂଶ ଲୋକଙ୍କର କୌଣସି କାମକୁ ଭଲ ଭାବରେ କରିବାର ଦକ୍ଷତା ନଥାଏ । କିନ୍ତୁ ଯିଏ ସତ୍ୟନିଷ୍ଠ ଭାବରେ ଏହି ପ୍ରତିରକ୍ଷାର ଆଶ୍ରୟ ନେବ ତାକୁ ଭେଦ କରିବା କଷ୍ଟକର । ଏମାନେ ସଂଖ୍ୟାଲଘୁ କାରଣ କେବଳ ପାଞ୍ଚ-ଦଶ ପ୍ରତିଶତ ଲୋକ ହିଁ କିଛି ନା କିଛି କାମକୁ ଭଲ ଭାବରେ କରିପାରନ୍ତି । ଏମାନଙ୍କ ମଧ୍ୟରୁ ଆହୁରି କମ୍ ଲୋକ କିଛି କାମକୁ ଅତ୍ୟନ୍ତ ଭଲ ଭାବରେ କରିପାରିବେ । ଦୁଇଦୁଇଟି କାମକୁ ଭଲ ଭାବରେ କରିପାରିବା ଲୋକ ନଗଣ୍ୟ । ଯଦି କୌଣସି ଲୋକର କିଛି ପ୍ରତିଭା ଅଛି ତେବେ ତାହାର ସମ୍ପୂର୍ଣ୍ଣ ବିକାଶ ପାଇଁ ସେ ଯେକୌଣସି ତ୍ୟାଗ ପାଇଁ ପ୍ରସ୍ତୁତ ରହିବା ଦରକାର ।

ଡ଼ଃ ଜନସନ୍ ମଧ୍ୟ ଏହି ଦୃଷ୍ଟିକୋଣକୁ ସମର୍ଥନ କରିଥିଲେ । ମୁଁ ତାଙ୍କୁ ଯେତେବେଳେ କହିଲି ଯେ ମୁଁ ତାଙ୍କ ସମନାମଧାରୀ ଜନସନକୁ ଏକକାଳୀନ ତିନୋଟି ଘୋଡା ସବାର ହେବାର ଦେଖିବାକୁ ଯାଇଥିଲି, ସେ କହିଲେ, "ମହାଶୟ, ଏପରି ଲୋକଙ୍କୁ ଉତ୍ସାହିତ କରିବା ଦରକାର । ଏମାନଙ୍କ କାମରୁ ମଣିଷ ଭିତରେ ଲୁଚି

ରହିଥିବା ଶକ୍ତି ବିଷୟରେ ଧାରଣା କରିହୁଏ.... ।" ସେହିଭଳି ସେ ପର୍ବତାରୋହୀ, ସମୁଦ୍ର ସନ୍ତରଣକାରୀ ଓ ଆଖିବନ୍ଦକରି ଚେସ୍ ଖେଳୁଥିବା ଲୋକକୁ ମଧ୍ୟ ପ୍ରଶଂସା କରିଥାଆନ୍ତେ । ମୁଁ ମଧ୍ୟ ଏପ୍ରକାର ଅଭାବନୀୟ ସଫଳତା ପାଇଁ ସମସ୍ତ ଉଦ୍ୟମକୁ ସମର୍ଥନ କରେ । ଏପରିକି ହସ୍ତକୌଶଳ ପ୍ରଦର୍ଶନ କରୁଥିବା ଅବା ବିଭିନ୍ନ ପ୍ରକାର ଶବ୍ଦ ସୃଷ୍ଟି କରି ପାରୁଥିବା ଲୋକଙ୍କର ମଧ୍ୟ ସଫଳତା ମୁଁ ଚାହେଁ । ଆଲେଖାଇନ ବା ବ୍ରାଡମ୍ୟାନ୍ ରେକର୍ଡ଼ ପ୍ରତିଷ୍ଠା କରିବାରେ ବିଫଳ ହେଲେ ମତେ ବହୁତ ବାଧେ । ଏହି ବିଷୟରେ ଡଃ ଜନସନ୍ ଓ ମୁଁ ଜନସାଧାରଣଙ୍କ ସହ ପୁରାପୁରି ଏକମତ । ଡବଲ୍ୟୁ. ଜେ. ଟର୍ଣ୍ଣର ଯଥାର୍ଥରେ କହିଛନ୍ତି ଯେ କେବଳ ହୀନମନା ଆତ୍ମଗର୍ବୀମାନେ ହିଁ ଅନ୍ୟର ଉତ୍କର୍ଷ ବା ସଫଳତାକୁ ନ୍ୟୂନ ଭାବରେ ଦେଖନ୍ତି ।

ଆମକୁ କିନ୍ତୁ ବିଭିନ୍ନ କାମର ମୂଲ୍ୟ ମଧ୍ୟରେ ଥିବା ପାର୍ଥକ୍ୟକୁ ବିଚାର କରିବାକୁ ହେବ । ମୁଁ ବରଂ ଜଣେ ଔପନ୍ୟାସିକ ବା ଚିତ୍ରକର ହେବାକୁ ପସନ୍ଦ କରିବି କିନ୍ତୁ ସେହି ସ୍ତରର ରାଜନୀତିଜ୍ଞ ହେବାକୁ ନୁହେଁ । ଖ୍ୟାତି ଅର୍ଜନ କରିବା ପାଇଁ ଏପରି ଅନେକ ରାସ୍ତା ଅଛି ଯାହାକୁ ସମାଜ ପାଇଁ କ୍ଷତିକାରକ ଭାବି ଆମ ଭିତରୁ ଅଧିକାଂଶ ପ୍ରତ୍ୟାଖ୍ୟାନ କରନ୍ତି । ବିଭିନ୍ନ କାର୍ଯ୍ୟ ମଧ୍ୟରେ ଥିବା ମୂଲ୍ୟଗତ ପାର୍ଥକ୍ୟ କିନ୍ତୁ ଆମ ବୃତ୍ତି ଚୟନରେ ନିର୍ଣ୍ଣାୟକ ଭୂମିକା ନେବାର ଦୃଷ୍ଟାନ୍ତ ଖୁବ୍ ବିରଳ । ବରଂ ଆମର ବୃତ୍ତି ଚୟନ ମୋଟାମୋଟି ଭାବରେ ଆମର ସହଜାତ ନିପୁଣତାର ସୀମା ଦ୍ୱାରା ନିର୍ଦ୍ଧାରିତ ହୋଇଥାଏ । କବିତାର ମୂଲ୍ୟ କ୍ରିକେଟ ଠାରୁ ଯଥେଷ୍ଟ ବେଶୀ । କିନ୍ତୁ କ୍ରିକେଟ ଛାଡି ନିମ୍ନସ୍ତରର କବିତା ଲେଖାରେ ବ୍ରତୀ ଦେଇଥିଲେ ଲୋକମାନଙ୍କ ପାଖରେ ବ୍ରାଡ଼ମ୍ୟାନ ଜଣେ ବୁଦ୍ଧିହୀନ ଲୋକଭାବରେ ଗଣାହୋଇଥାଆନ୍ତେ । (ଅବଶ୍ୟ ଏଠି ମୁଁ ଧରି ନେଉଛି ଯେ ସେ ଉଚ୍ଚମାନର କବିତା ଲେଖି ପାରି ନଥାନ୍ତେ ।) ଯଦି କ୍ରିକେଟ ଆହୁରି ମୂଲ୍ୟହୀନ ହୋଇଥାଆନ୍ତା ଓ କବିତା ଆହୁରି ଅଧିକ ମୂଲ୍ୟବାନ, ତେବେ ହୁଏତ ସେ ନିଜ ପସନ୍ଦକୁ ଆପଣେଇବାରେ ବହୁ ଦ୍ୱନ୍ଦ୍ୱର ସମ୍ମୁଖୀନ ହୋଇଥାଆନ୍ତେ । ମୁଁ ନିଜେ ବି ଜାଣିନି ଯେ ମୁଁ ଭିକ୍ଟର ଟ୍ରମ୍ପର ହେବାକୁ ପସନ୍ଦ କରିଥାଆନ୍ତି କି ରୁପର୍ଟ ବ୍ରୁକ୍ । ସୌଭାଗ୍ୟବଶତଃ ଏପରି ଦ୍ୱନ୍ଦ୍ୱ ଖୁବ୍ କମ୍ ସମୟରେ ଦେଖାଦିଏ ।

ଆଉପାଦେ ଆଗକୁ ଯାଇ ମୁଁ କହିପାରେ ଯେ ଜଣେ ଗଣିତଜ୍ଞ କ୍ଷେତ୍ରରେ ଏ ପ୍ରକାର ଦ୍ୱନ୍ଦ୍ୱ ଆହୁରି ବିରଳ । ଗଣିତଜ୍ଞ ଓ ଅନ୍ୟମାନଙ୍କ ମାନସିକ ଦକ୍ଷତା ମଧ୍ୟରେ ଥିବା ପାର୍ଥକ୍ୟକୁ ସାଧାରଣତଃ ଅତିରଞ୍ଜିତ କରାଯାଇଥାଏ । ତଥାପି ଏକଥା କେହି

ଅସ୍ୱୀକାର କରିବେ ନାହିଁ ଯେ ଗାଣିତିକ ପ୍ରତିଭା ଏକ ସର୍ବୋତ୍ତମ ଶ୍ରେଣୀୟ ବିଶେଷ ପ୍ରତିଭା । ଗଣିତଜ୍ଞମାନେ ସାଧାରଣ କର୍ମକ୍ଷେତ୍ରରେ ଦକ୍ଷତା ତଥା ଏକାଧିକ-କ୍ଷେତ୍ରରେ ପାରଦର୍ଶିତା ପାଇଁ ଗୋଟିଏ ବିଶେଷ ଧରଣର ଜାତି ଭାବରେ ପରିଚିତ ନୁହଁନ୍ତି । ଜଣେ ସଚ୍ଚା ଗଣିତଜ୍ଞ ଦୃଷ୍ଟିରେ ତା'ର ଗଣିତ ଅନ୍ୟ ଯେକୌଣସି କାମ ତୁଳନାରେ ଯେ ଯଥେଷ୍ଟ ସମ୍ମାନର ଅଧିକାରୀ ହେବ ଏହା ଅନେଶତ ପ୍ରତିଶତ ସତ । ସେଭଳି ଲୋକ ଯଦି ନିଜ ପ୍ରତିଭାର ବିକାଶୋପଯୋଗୀ ସୁଯୋଗ ଛାଡି ଅନ୍ୟ କୌଣସି ମାମୁଲି କାର୍ଯ୍ୟରେ ନିଜକୁ ନିୟୋଜିତ କରେ ତେବେ ତାହା ତାହାର ମୂର୍ଖାମୀ ବୋଲି କୁହା ହେବ । ଆର୍ଥିକ ଦୁରାବସ୍ଥା ବା ବୟସାଧିକ୍ୟ ହିଁ କେବଳ ଏଭଳି ନିଷ୍ପତ୍ତିକୁ ଯଥାର୍ଥତା ପ୍ରଦାନ କରିପାରେ ।

(୪)

ମୁଁ ଏଠାରେ ବୟସ ବିଷୟରେ ଅଧିକ କିଛି ଆଲୋଚନା କରିବା ଠିକ୍ ହେବ ବୋଲି ଭାବୁଛି । ବିଶେଷ କରି ଗଣିତଜ୍ଞମାନଙ୍କ ପାଇଁ ଏହା ଖୁବ୍ ଗୁରୁତ୍ୱପୂର୍ଣ୍ଣ । କୌଣସି ଗଣିତଜ୍ଞ ଭୁଲିବା ଉଚିତ୍ ନୁହେଁ ଯେ ଅନ୍ୟ ଯେକୌଣସି କଳା ବା ବିଜ୍ଞାନ ତୁଳନାରେ ଗଣିତ ଅଧିକମାତ୍ରାରେ ଯୁବକମାନଙ୍କ ଖେଳ । ଲଣ୍ଡନ ରୟାଲ ସୋସାଇଟିର ସଭ୍ୟପଦ ପାଇବାର ହାରାହାରି ବୟସ ଗଣିତ କ୍ଷେତ୍ରରେ ସର୍ବନିମ୍ନ ହେବା ହିଁ ଏହାର ଏକ ଜ୍ୱଳନ୍ତ ଉଦାହରଣ ।

ଆମେ ଅବଶ୍ୟ ଆହୁରି ଅନେକ ଉଜ୍ଜ୍ୱଳ ଦୃଷ୍ଟାନ୍ତ ପାଇପାରିବା । ଉଦାହରଣ ସ୍ୱରୂପ ଆମେ ଏଭଳି ଜଣଙ୍କ ଜୀବନ ବିଷୟରେ ଆଲୋଚନା କରିବା ଯିଏ ପୃଥିବୀର ଶ୍ରେଷ୍ଠ ତିନିଜଣ ଗଣିତଜ୍ଞଙ୍କ ମଧ୍ୟରୁ ଜଣେ ବୋଲି ନିର୍ଦ୍ୱନ୍ଦରେ ସର୍ବମାନ୍ୟ । ନିୟୁଟନ ପଚାଶ ବର୍ଷ ବୟସରେ ଗଣିତ ଗବେଷଣା ତ୍ୟାଗ କଲେ ଓ ତାହାର ବହୁପୂର୍ବରୁ ତାଙ୍କର ସେଥିପ୍ରତି ଆଗ୍ରହ କମିଯାଇଥିଲା । ତାଙ୍କୁ ଚାଳିଶ ବର୍ଷ ହେଲାବେଳକୁ ସେ ଭଲଭାବରେ ଉପଲବ୍ଧି କରିସାରିଥିଲେ ଯେ ତାଙ୍କର ସୃଜନଶୀଳତାର ଉତ୍ତରିତ ସମୟ ସରିଆସୁଛି । ମହାକର୍ଷଣ ନିୟମ ଓ ଆଲୋକ କଣିକା ଭଳି ତାଙ୍କର ସର୍ବଶ୍ରେଷ୍ଠ ମୌଳିକ ସର୍ଜନା ସେ ବାଢ଼ିଥିଲେ ୧୬୬୬ ମସିହାରେ । ସେତେବେଳେକୁ ତାଙ୍କର ବୟସ ମାତ୍ର ଚବିଶ । ତାଙ୍କ ନିଜ ଭାଷାରେ, "ନୂତନ ସର୍ଜନା ପାଇଁ ସେ ଥିଲା ମୋ ପାଇଁ ସର୍ବୋତ୍କୃଷ୍ଟ ସମୟ । ଜୀବନର ଅନ୍ୟ କୌଣସି ସମୟରେ ମୁଁ ଗଣିତ ଓ ଦର୍ଶନ ଚିନ୍ତାରେ ଅଧିକ ନିବିଷ୍ଟ ହୋଇପାରିନାହିଁ ।" ତାଙ୍କୁ ଚାଳିଶ ବର୍ଷ ହେବା ଭିତରେ ହିଁ

ସେ କେତୋଟି ବିରାଟ ଆବିଷ୍କାର କରି ପାରିଥିଲେ (ଗ୍ରହମାନଙ୍କର କକ୍ଷ କଥା ଆବିଷ୍କାର ବେଳକୁ ତାଙ୍କ ବୟସ ସଇଁତିରିଶ) । ତା'ପରେ ସେ କେବଳ ନିଜର ପୁରୁଣା ସୃଷ୍ଟିରେ ନୂଆ ରଙ୍ଗର ପୁଟି ଦେଇଥିଲେ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଗାଲଏ ଏକୋଇଶ ବର୍ଷରେ ମୃତ୍ୟୁ ବରଣ କରିଥିଲେ; ଆବେଲ ସତେଇଶ ବର୍ଷରେ; ରାମାନୁଜନ ତେତିଶ ବର୍ଷରେ ଓ ରିମାଁ ଚାଳିଶରେ । ଅଳ୍ପ କିଛି ଗଣିତଜ୍ଞ ବୟସାଧିକ୍ୟରେ ବଡ଼କାମ କରିବାର ଦୃଷ୍ଟାନ୍ତ ଅଛି ଯଥା ଡିଫରେନ୍‌ସିଆଲ ଜ୍ୟାମିତି ଉପରେ ପ୍ରଖ୍ୟାତ କୃତିଟି ଲେଖିଲାବେଳକୁ ଗାଉସଙ୍କୁ ପଚାଶ ବର୍ଷ (ଯଦିଓ ସେ ସମ୍ବନ୍ଧୀୟ ମୁଖ୍ୟ ଧାରଣା ଦଶବର୍ଷ ଆଗରୁ ତାଙ୍କ ମନକୁ ଆସିଥିଲା ।) ପଚାଶ ବର୍ଷରୁ ଅଧିକ ବୟସ୍କ ଗଣିତଜ୍ଞ ଗଣିତକୁ ଆଗେଇନେବା ଭଳି ଅବଦାନ ଦେଇଥିବାର ମୁଁ ଜାଣିନାହିଁ । ବୟସ ଯୋଗୁ ଯଦି ଗଣିତଜ୍ଞ ଗଣିତ ପ୍ରତି ବିତସ୍ପୃହ ହୁଏ ବା ଗଣିତ ଗବେଷଣା ଛାଡ଼ିଦିଏ ତେବେ ତା'ର ନିଜର ବା ଗଣିତର ବିଶେଷ କ୍ଷତି ହେବାର ଅବକାଶ ନଥାଏ ।

ଅନ୍ୟ ପକ୍ଷରେ ବିଶେଷ ଲାଭ ହେବାର ମଧ୍ୟ ସମ୍ଭାବନା ନଥାଏ । ଯେଉଁ ଗଣିତଜ୍ଞମାନେ ଗଣିତ ଛାଡ଼ି ଅନ୍ୟକ୍ଷେତ୍ରରେ ନିଜକୁ ନିୟୋଜିତ କରିଛନ୍ତି ସେମାନଙ୍କ କାହାଣୀ ସେତେ ଉତ୍ସାହଜନକ ନୁହେଁ । ନିୟୁଟନ ମୁଦ୍ରାତିଆରି କାରଖାନାର ମୁଖ୍ୟ ନିୟନ୍ତ୍ରକ (ମାଷ୍ଟର) ଭାବେ କେବଳ ମାମୁଲି ସଫଳତା ହିଁ ପାଇଥିଲେ (ଅନ୍ୟମାନଙ୍କ ସହ କଳି ଝଗଡ଼ାରେ ଫସିବା ଛଡ଼ା) । ପେନ୍‌ଲେ ମଧ୍ୟ ଫ୍ରାନ୍ସର ପ୍ରଧାନମନ୍ତ୍ରୀ ଭାବେ ବିଶେଷ ସଫଳତା ପାଇନଥିଲେ । ଲାପଲାସ୍‌ଙ୍କ ରାଜନୈତିକ ଜୀବନ ଥିଲା ଖୁବ୍ ଅପବାଦଭରା – ଅବଶ୍ୟ ଏହା ଏକ ଭଲ ଉଦାହରଣ ନୁହେଁ କାରଣ ଲାପଲାସ୍ ଦକ୍ଷ ତ ନଥିଲେ, ସଚ୍ଚୋଟ ମଧ୍ୟ ନଥିଲେ । ସର୍ବୋପରି ଗଣିତ କିରବା ମଧ୍ୟ ସେ ପୁରାପୁରି ଛାଡ଼ି ନଥିଲେ । କେହି ଜଣେ ଶ୍ରେଷ୍ଠ ଗଣିତଜ୍ଞ ଗଣିତ ଛାଡ଼ି ଅନ୍ୟ କୌଣସି କ୍ଷେତ୍ରରେ ଶ୍ରେଷ୍ଠତ୍ୱ ଅର୍ଜନ କରିଥିବାର ଦୃଷ୍ଟାନ୍ତ ନାହିଁ କହିଲେ ଚଳେ । ପାସ୍କାଲ ବୋଧହୁଏ ସର୍ବୋତ୍ତମ ବ୍ୟତିକ୍ରମ । କିଛି ଯୁବ ପ୍ରତିଭା ହୁଏତ ଥାଇ ପାରନ୍ତି ଯେଉଁମାନେ ଗଣିତ ସହିତ ଯୋଡ଼ି ହୋଇ ରହିଥିଲେ ପ୍ରଥମ ଶ୍ରେଣୀୟ ଗଣିତଜ୍ଞ ହୋଇପାରିଥାଆନ୍ତେ କିନ୍ତୁ ସେଭଳି କଥା ମୁଁ ଶୁଣିନାହିଁ । ଏସବୁ ମୋର ଅନୁଭୂତିର କଥା । ମୁଁ ଯେତେ ପ୍ରତିଭାବାନ ଯୁବ ଗଣିତଜ୍ଞଙ୍କ ବିଷୟ ଜାଣିଛି ସେମାନେ ସମସ୍ତେ ଗଣିତ ପ୍ରତି ବିଶ୍ୱସ୍ତ ରହିଛନ୍ତି ସେମାନଙ୍କ ଉଚ୍ଚାକାଂକ୍ଷାର ଅଭାବ ଯୋଗୁ ନୁହେଁ ବରଂ ପ୍ରାବଲ୍ୟ ଯୋଗୁ ।

ସେମାନେ ସମସ୍ତେ ଉପଲବ୍ଧି କରିଥିଲେ ଯେ ଯଦି କୌଣସି କ୍ଷେତ୍ରରେ ସେମାନଙ୍କର ଯଶସ୍ୱୀ ହେବାର ସମ୍ଭାବନା ଅଛି ତାହା କେବଳ ହିଁ ଗଣିତରେ ।

(୫)

ଆଗରୁ କହିବା ଅନୁଯାୟୀ ଉପରୋକ୍ତ ପ୍ରତିରକ୍ଷାର ଏକ ନିରୀହ ସଂସ୍କରଣ ଅଛି । ମୁଁ ତାହାର ଅବତାରଣା ଅଳ୍ପ କେତୋଟି ବାକ୍ୟରେ ସାରି ଦେବାକୁ ଚାହୁଁଛି ଯଥା;

(୨) "ମୁଁ କୌଣସି କାର୍ଯ୍ୟ ବିଶେଷ ନିପୁଣତାର ସହ କରିପାରିବି ନାହିଁ । ମୁଁ ଯାହା କରୁଛି କେବଳ ସେଇଆ ହିଁ କରିବାର ସୁଯୋଗ ମତେ ମିଳିଛି । ମତେ ଅନ୍ୟ କିଛି କରିବାର ସୁଯୋଗ ମିଳିନାହିଁ ।" ଏ ପ୍ରତିରକ୍ଷାକୁ ମଧ୍ୟ ମୁଁ ଶେଷକଥା ଭାବରେ ଗ୍ରହଣ କରୁଛି । ଏକଥା ସତ ଯେ ଅଧିକାଂଶ ଲୋକ କୌଣସି ଗୋଟିଏ କାମରେ ବି ପାରଦର୍ଶିତା ଦେଖାଇ ପାରନ୍ତି ନାହିଁ । ସେହି ଦୃଷ୍ଟିରୁ ସେମାନେ ଯାହାକିଛି କଲେ ମଧ୍ୟ ଯାଏଆସେ ନାହିଁ । ତେଣୁ ସେ ବିଷୟରେ ଅଧିକ କହିବା ମଧ୍ୟ ନିଷ୍ପ୍ରୟୋଜନ । ଏହା ଏକ ନିଷ୍ପତ୍ତିମୂଳକ ଉତ୍ତର ହେଲେ ମଧ୍ୟ କୌଣସି ସ୍ୱାଭିମାନୀ ଲୋକଠାରୁ ଏହା ଆଶା କରାଯାଇନପାରେ । ମୁଁ ମଧ୍ୟ ଭାବୁଛି ଯେ ଆମେ କେହି ଏ ପ୍ରକାର ପ୍ରତିରକ୍ଷାରେ ସନ୍ତୁଷ୍ଟ ହୋଇ ପାରିବା ନାହିଁ ।

ବର୍ତ୍ତମାନ ସମୟ ଆସିଛି, ମୁଁ ତୃତୀୟ ପରିଚ୍ଛେଦରେ ଯେଉଁ ପ୍ରଥମ ପ୍ରଶ୍ନଟି ଉଠାଇଥିଲି ସେ ବିଷୟରେ ଆଲୋଚନା କରିବାର । ସେ ପ୍ରଶ୍ନଟି ଦ୍ୱିତୀୟ ପ୍ରଶ୍ନ ତୁଳନାରେ ଖୁବ୍ ଜଟିଳ ଯଥା ଗଣିତ କହିଲେ ମୁଁ ଓ ଅନ୍ୟ ଗଣିତଜ୍ଞମାନେ ଯାହା ବୁଝନ୍ତି ତାହା କରଣୀୟକି ? ଯଦି କରଣୀୟ ତେବେ କାହିଁକି ?

ଏବେଏବେ ୧୯୨୦ ମସିହାରେ ଅକ୍ସଫୋର୍ଡରେ ପ୍ରଦତ୍ତ ମୋର ଉଦ୍‌ଘାଟନୀ ବକ୍ତୃତାର ପ୍ରଥମ କିଛି ପୃଷ୍ଠା ଉପରେ ନଜର ପକାଉଥିଲି । ସେଥିରେ ଗଣିତ ପ୍ରତିରକ୍ଷାର ଏକ ରେଖାଚିତ୍ର ଅଛି । ଅଳ୍ପ କିଛି ପୃଷ୍ଠାର ଯୁକ୍ତି ଅବଶ୍ୟ ଗଣିତର ସମ୍ପୂର୍ଣ୍ଣ ସୁରକ୍ଷା ପାଇଁ ଯଥେଷ୍ଟ ନୁହେଁ । ପୁଣି ସେତେବେଳେ ମୁଁ ଅକ୍ସଫୋର୍ଡ ଶୈଳୀ ବୋଲି ଯାହା ଭାବୁଥିଲି ସେହି ଶୈଳୀରେ ହିଁ ତାକୁ ଲେଖିଥିଲି । ଆଜି ତାକୁ ନେଇ ମୁଁ ଗର୍ବିତ ନୁହେଁ ତଥାପି ସବୁ ଅସମ୍ପୂର୍ଣ୍ଣତା ସତ୍ତ୍ୱେ ସେଥିରେ ମଞ୍ଜି କଥାଟି ଅଛି ବୋଲି ମୋର ଧାରଣା । ସେଥିପାଇଁ ସେତେବେଳେ ଯାହା କହିଥିଲି ତାହା ଏକ ବୃହତ୍ତର ଆଲୋଚନାର

ମୁଖବନ୍ଧ ହୋଇପାରିବ ଭାବି ତାହାର ସାରାଂଶ ଏଠାରେ ଉପସ୍ଥାପନ କରୁଛି ।

( ୧ ) ମୁଁ ଗଣିତମନସ୍କତାର କ୍ଷତିହୀନତା ଉପରେ ଗୁରୁତ୍ୱ ଦେଇ ମୋ ଲେଖାଟି ଆରମ୍ଭ କରିଥିଲି - "ଗଣିତ ଅଧ୍ୟୟନ ଲାଭଜନକ ନହେଲେ ମଧ୍ୟ ସମ୍ପୂର୍ଣ୍ଣ ଭାବରେ ଏକ କ୍ଷତିହୀନ ନିରୀହ ପେଷା" ବାକ୍ୟଟି ସହ । ମୁଁ ଆଜି ଏହି ମତ ସହିତ ଏକାତ୍ମ ରହିବି ନିଶ୍ଚୟ । କିନ୍ତୁ ମୁଁ ଭାବୁଛି ଏହି କଥାଟି ଏକ ବିସ୍ତୃତ ଆଲୋଚନା ଓ ସ୍ପଷ୍ଟିକରଣର ଅପେକ୍ଷା ରଖେ ।

ଗଣିତ କ'ଣ ସତରେ ଲାଭଜନକ ନୁହେଁ ? କେତେକ ଦୃଷ୍ଟିରୁ ଏହି ଆରୋପ ଆଦୌ ଠିକ୍ ନୁହେଁ କାରଣ ବେଶ୍ କିଛି ଲୋକଙ୍କୁ ଗଣିତ ପ୍ରଚୁର ଆନନ୍ଦ ଦିଏ । ମୁଁ କିନ୍ତୁ "ଲାଭ"ର ଏକ ସଂକୀର୍ଣ୍ଣ ଅର୍ଥ କଥା ଭାବୁଥିଲି; ଯେ ଗଣିତ, ରସାୟନ ବିଜ୍ଞାନ ବା ଶରୀର ବିଜ୍ଞାନ ଭଳି, ସିଧା ସଳଖ ଉପକାରୀ କି ? ପ୍ରଶ୍ନଟି ସରଳ ବା ବିବାଦରହିତ ନୁହେଁ । ତଥାପି ମୋର ଶେଷ ଉତ୍ତର ହେଉଛି "ନାହିଁ" ଯଦିଓ କିଛି ଗଣିତଜ୍ଞ ଓ ବହୁ ଲୋକଙ୍କ ଉତ୍ତର ହେବ "ହିଁ" । ପୁଣି ପ୍ରଶ୍ନ ହେଲା ଗଣିତ କ୍ଷତିହୀନ କି ? ଏଥର ମଧ୍ୟ ଉତ୍ତରଟି ଏତେ ସହଜସାଧ୍ୟ ନୁହେଁ । ମୁଁ ଏ ପ୍ରଶ୍ନର ଉତ୍ତର ନଦେବାକୁ ବେଶୀ ପସନ୍ଦ କରିବି କାରଣ ପ୍ରଶ୍ନଟି ସହିତ ବିଜ୍ଞାନର ଯୁଦ୍ଧ ଉପରେ ଥିବା ପ୍ରଭାବ ପ୍ରସଙ୍ଗ ଜଡିତ । ଉପର ପ୍ରଶ୍ନଟିକୁ ତେଣୁ ସିଧାସଳଖ ଅନ୍ୟଭାବରେ ଉପସ୍ଥାପିତ କରାଯାଇ ପାରେ ଯେ ଗଣିତ ସେହିଭଳି ଭାବରେ କ୍ଷତିହୀନ କି ଯେଉଁଭଳି ରସାୟନ ବିଜ୍ଞାନ ସ୍ପଷ୍ଟଭାବରେ କ୍ଷତିକାରକ ? ମୁଁ ଏ ପ୍ରଶ୍ନ ଦୁଇଟିକୁ କିଛି ସମୟପରେ ଫେରିବି ।

( ୨ ) ମୁଁ ତା'ପରେ ଲେଖିଥିଲି ଯେ "ଏ ବିଶ୍ୱ ଏକ ବିରାଟ ପ୍ରଯୋଜନା । ଆମ ଭଳି କିଛି ବ୍ୟକ୍ତି ବିଶେଷଙ୍କର ସମୟ ଅପଚୟ ବା ମୁଷ୍ଟିମେୟ ବିଶ୍ୱବିଦ୍ୟାଳୟ ଅଧ୍ୟାପକଙ୍କ ବିଫଳତା ବିଶ୍ୱ ପାଇଁ ଏକ ବଡ଼ ବିପର୍ଯ୍ୟୟ ନୁହେଁ ।" ମୁଁ ଏଠି ଅତିମାତ୍ରାରେ ନମ୍ରତାର ଗୁଣଗାନ କରୁଥିବାପରି ଲାଗୁଥିବ ଯାହାର ପ୍ରତ୍ୟାଖ୍ୟାନ ସପକ୍ଷରେ ଆଗରୁ ଯୁକ୍ତି ବାଢ଼ିଥିଲି । ପ୍ରକୃତରେ ମୁଁ ଯାହା ଲେଖିଥିଲି ଠିକ୍ ସେଇଆ କହିବାକୁ ଚାହୁଁ ନଥିଲି । ମୁଁ ତୃତୀୟ ପରିଚ୍ଛେଦରେ ଆଲୋଚନା କରିଥିବା ସମସ୍ତ କଥାକୁ କେବଳ ଗୋଟିଏ ବାକ୍ୟରେ କହିବାକୁ ଯାଇ ସେପରି ଲେଖିଦେଇଥିଲି । ମୁଁ ଧରିନେଇଥିଲି ଯେ ଆମ ଭଳି ଅଧ୍ୟାପକମାନଙ୍କ ପାଖରେ ଯାହାକିଛି ସ୍ୱଳ୍ପ ପ୍ରତିଭା ଅଛି ତା'ର ସଠିକ୍ ବିନିଯୋଗ କଲେ ଆମକାମରେ କୌଣସି ତ୍ରୁଟି ବିଚ୍ୟୁତି ରହିବ ନାହିଁ ।

(୩) ଶେଷରେ ମୁଁ ଗାଣିତିକ କୃତିତ୍ୱର ଚିରସ୍ଥାୟିତ୍ୱ ଉପରେ ଗୁରୁତ୍ୱ ଦେଇଥିଲି (ଯାହା ଅବଶ୍ୟ ଆଜି ଦୁଃଖଦ ଅତିଶୟୋକ୍ତି ଭଳି ଲାଗୁଛି) । ଲେଖିଥିଲି; "ଆମେ ଯାହା କରିଥାଉ ସେଗୁଡିକ ଛୋଟ ହେଲେ ମଧ୍ୟ ସେଥିରେ ଚିରସ୍ଥାୟିତ୍ୱର ଛାପ ରହିଥାଏ । ଆଉ ଏକଥା କହିବା ବାହୁଲ୍ୟ ଯେ ଚିରସ୍ଥାୟିତ୍ୱର ସାମାନ୍ୟ ଛାପଥିବା କାର୍ଯ୍ୟ କିରବା, ଗୀତ ଲେଖିବା ହେଉ ଅବା ଜ୍ୟାମିତିର ନୂଆ ଉପପାଦ୍ୟଟି ପ୍ରମାଣ କରିବା ହେଉ, ଲୋକସଂଖ୍ୟାର ବହୁଳାଂଶ ଲୋକଙ୍କର କ୍ଷମତାର ବାହାରେ ।"

ଏବଂ

"ଆଜି ଯେତେବେଳେ ଶାସ୍ତ୍ରୀୟ ଓ ଆଧୁନିକ ଅଧ୍ୟୟନ ଭିତରେ ବିବାଦର ସୂତ୍ରପାତ ହୋଇଛି ସେ ସମୟରେ ସେହି ଅଧ୍ୟୟନ ବିଷୟରେ ମଧ୍ୟ କିଛି କହିବା ଆବଶ୍ୟକ । ସେ ଅଧ୍ୟୟନ ନା ଆରମ୍ଭ ହୋଇଛି ପିଥାଗୋରାସଙ୍କ ଠାରୁ ନା ଆଇନଷ୍ଟାଇନଙ୍କ ଠାରେ ଶେଷ ହୋଇଛି; ଏହା ଏକାଧାରରେ ସର୍ବପୁରାତନ ଓ ସର୍ବନୂତନ; ଏକାଧାରରେ ଶାସ୍ତ୍ରୀୟ ଓ ଆଧୁନିକ ମଧ୍ୟ ।"

ଏସବୁ ଆପଣଙ୍କୁ ବଡ଼ ବଡ଼ ଦର୍ଶନର କଥା ଭଳି ଲାଗୁଥାଇପାରେ କିନ୍ତୁ ଏହା ଭିତରେ ସତ୍ୟତାର ସ୍ୱର ଛପି ରହିଛି । ଅନ୍ୟାନ୍ୟ ପ୍ରଶ୍ନ ଗୁଡିକ ଉପରେ ମୋର ବ୍ୟକ୍ତିଗତ ମତାମତ ନଦେଇ, ସେଗୁଡିକୁ ଅସମାହିତ ରଖି, ମୁଁ କେବଳ ଏହି କଥାଟି ଉପରେ ବିସ୍ତୃତ ଆଲୋଚନା ରଖିପାରେ ।

(୭)

ମୁଁ କହି ରଖୁଛି ଯେ ମୁଁ କେବଳ ସେହିଭଳି ପାଠକମାନଙ୍କ ପାଇଁ ଲେଖୁଛି ଯେଉଁମାନଙ୍କ ଚେତନା ରୁଚିପ୍ରିୟ; ଆଜି ଅଛି ବା କାଲି ଥିଲା ।

ଜଣେ ମଣିଷର, ବିଶେଷକରି ଜଣେ ଯୁବକର, ପ୍ରଥମ କର୍ତ୍ତବ୍ୟ ହେଲା ଉଚ୍ଚାଭିଳାଷୀ ହେବା । ଉଚ୍ଚାଭିଳାଷ ଏକ ଅଭିରୁଚିପୂର୍ଣ୍ଣ ପ୍ରାଣୋଚ୍ଛ୍ୱାସ ଯାହା ଭିନ୍ନଭିନ୍ନ ରୂପ ନେଇପାରେ । ଆଟିଲା ବା ନେପୋଲିଅନଙ୍କ କ୍ଷେତ୍ରରେ ଏହା କିଛିମାତ୍ରାରେ ଦେଖିବାକୁ ମିଳିଥିଲା ସତ କିନ୍ତୁ ଅମରତ୍ୱର ସ୍ପର୍ଶଥିବା କିଛି କର୍ମ କରିବାର ପିପାସା ହିଁ ଅଭିଳାଷର ସର୍ବୋତ୍ତମ ଉପଲବ୍ଧି । ଯେଉଁଠି ମନ ଗୁଣୁଗୁଣୁ ହେଉଥିବ

"ସାଗର ଓ ପୃଥିବୀ ମଝିରେ

ପ୍ରସାରିତ ବାଲୁକା ରାଶିରେ

ତୋଳିବି ବା ଲେଖିଦେବି
ଝଲମଲ କରୁଥିବ ଯାହା
ରାତ୍ରିର ସେ ଘନ କାଳିମାରେ ।
ମୋ ଜୀବନ ସନ୍ତକ ସେତକ,
ସମୟ ଆଘାତ ସହି
ଘୋଷୁଥିବ ମୋରକଥା
ଚିରକାଳ ପାଇଁ ।"

ଉଚ୍ଚାକାଂକ୍ଷା ହିଁ ପ୍ରତ୍ୟେକ ମହତ୍ କାମର ପ୍ରେରଣା ହୋଇ ରହି ଆସିଛି । ମଣିଷ ଜୀବନକୁ ସହଜ, ସୁନ୍ଦର କରିବା ପାଇଁ ଯାହାକିଛି ଉଲ୍ଲେଖନୀୟ କାର୍ଯ୍ୟ ସଭ୍ୟତାର ଅଗ୍ରଗତି ସହ ଯୋଡି ହୋଇରହିଛି ସବୁକିଛି ଏହି ଉଚ୍ଚାକାଂକ୍ଷୀମାନଙ୍କ ଅବଦାନ । ଦୁଇଟି ସର୍ବଜନବିଦିତ ଉଦାହରଣ ଉଲ୍ଲେଖ କରାଯାଇପାରେ । ଲିଷ୍ଟର ଓ ପାଷ୍ଟ୍ୟୋର କ'ଣ ଉଚ୍ଚାଭିଳାଶୀ ନଥିଲେ ? ଅଥବା ନିଅନ୍ତୁ କିଙ୍ଗ୍ ଜିଲେଟ୍ ଓ ଉଇଲିଅମ ଉଇଲେଟ୍ଙ୍କ ଦୃଷ୍ଟାନ୍ତ; ଏମାନଙ୍କ ତୁଳନାରେ ମଣିଷ ଜୀବନକୁ ସହଜ କରିବା କ୍ଷେତ୍ରରେ ଆଉ କାହାରି ଅଧିକ ଅବଦାନ ଥିବା କଳ୍ପନା କରାଯାଇପାରେ କି ?

ଶରୀରତତ୍ତ୍ୱ ଗୋଟିଏ ଉପଯୁକ୍ତ ଉଦାହରଣ କାରଣ ଏହା ଏକ ଉପକାରୀ ପାଠ ବୋଲି ସମସ୍ତେ ଭାବନ୍ତି । ଆମେ ବିଜ୍ଞାନ ସପକ୍ଷବାଦୀଙ୍କ ଯୁକ୍ତି ଭିତରେ ଛପି ରହିଥିବା ଏକ ଭ୍ରମ ବିଷୟରେ ସଚେତନ ରହିବା ଉଚିତ୍ । ଏହି ଭ୍ରମର ବଶବର୍ତ୍ତୀ ହୋଇ ସେମାନେ ଭାବିନିଅନ୍ତି ଯେ ଯେଉଁ ଲୋକମାନଙ୍କର କାର୍ଯ୍ୟାବଳୀ ମଣିଷ ସମାଜର ହିତକରେ ସେମାନେ ସର୍ବଜନହିତାୟ ଭାବନା ପ୍ରେରିତ ହୋଇ ଏହି କାର୍ଯ୍ୟଗୁଡ଼ିକ କରିଥାଆନ୍ତି; ଉଦାହରଣ ସ୍ୱରୂପ ଶରୀରବିଜ୍ଞାନୀମାନେ ସତ୍‌ଗୁଣସମ୍ପନ୍ନ ପରୋପକାରୀ ବ୍ୟକ୍ତି । ତା'ର କାମ ମାନବଜାତିର ଉପକାରରେ ଲାଗିବ ବୋଲି ଭାବି ଜଣେ ଶରୀରବିଜ୍ଞାନୀ ହୁଏତ ଖୁସି ହୋଇପାରେ କିନ୍ତୁ ସେମାନଙ୍କ କାର୍ଯ୍ୟପାଇଁ ବଳ ଓ ପ୍ରେରଣା ଯୋଗାଉଥିବା ଅନ୍ତର୍ନିହିତ ଉଦ୍ଦେଶ୍ୟ ଜଣେ ଶାସ୍ତ୍ରାଧ୍ୟାୟୀ ବା ଗଣିତଜ୍ଞର ଅଭିନିବେଶତା ପଛରେ ଲୁଚି ରହିଥିବା ଉଦ୍ଦେଶ୍ୟ ଠାରୁ କୌଣସି ଗୁଣରେ ଭିନ୍ନ ନୁହେଁ ।

ମଣିଷଟି ଗବେଷଣାରେ ଅଭିନିବିଷ୍ଟ ହେବା ମୂଳରେ ଅନେକ ଗୁଡିଏ ମହତ୍ ଉଦ୍ଦେଶ୍ୟ ଥାଇପାରେ । କିନ୍ତୁ ସେମାନଙ୍କ ମଧ୍ୟରୁ ତିନୋଟି ଅନ୍ୟମାନଙ୍କ ଠାରୁ ଅଧିକ

ଗୁରୁତ୍ୱପୂର୍ଣ୍ଣ । ପ୍ରଥମଟି ହେଲା ବୌଦ୍ଧିକଜିଜ୍ଞାସା; ସତ୍ୟକୁ ଜାଣିବାର ଆଗ୍ରହ । ଏହାବିନା ଅନ୍ୟସବୁ ଉଦ୍ଦେଶ୍ୟ ସମ୍ପୂର୍ଣ୍ଣଭାବେ ଅର୍ଥହୀନ । ତା'ପରଟି ବୃତ୍ତିଗତ ସ୍ୱାଭିମାନ; ଆତ୍ମସନ୍ତୋଷ ଦେଇପାରୁଥିବା କାମ କରିବାର ଉତ୍କଣ୍ଠା । ଜଣେ ସ୍ୱାଭିମାନୀ ମଣିଷ ନିଜ ଯୋଗ୍ୟତାତୁଲ୍ୟ କାମ କରିନପାରିଲେ ଆତ୍ମଗ୍ଲାନୀରେ ମ୍ରିୟମାଣ ହୋଇଯାଏ । ଶେଷଟି ହେଲା ଉଚ୍ଚାଭିଳାଷ- ପ୍ରତିଷ୍ଠା ଓ ପ୍ରଶଂସା ତଥା ତାହାସହିତ ଆପେ ଆପେ ଆସୁଥିବା ପଦପଦବୀ, କ୍ଷମତା ଏପରିକି ଧନ ଇତ୍ୟାଦି ପାଇବାର ଆକାଂକ୍ଷା । କାମଟି କରିସାରିବା ପରେ ହୁଏତ ତୁମକୁ ଖୁସି ଲାଗିବ ଯେ ତୁମ କାମ ଅନ୍ୟ ଏକ ମଣିଷ ମନରେ କିଛି ଖୁସି ଆଣିପାରିଛି ବା ତା'ର ଦୁଃଖ ଲାଘବ କରିପାରିଛି କିନ୍ତୁ ସେଥିନିମିତ୍ତ ତୁମେ ସେ କାମଟି କରିନଥିଲ । ତେଣୁ ମତେ ଯଦି କୌଣସି ଗଣିତଜ୍ଞ ବା ରାସାୟନବିତ୍ ବା ଶରୀରବିଜ୍ଞାନୀ କହେଯେ ମାନବଜାତିର ଉପକାର କରିବା ତାଙ୍କ ଅଧ୍ୟୟନ ବା ଗବେଷଣାର ଅନ୍ତଃପ୍ରେରଣା ମୁଁ ତାଙ୍କୁ କେବେହେଲେ ବିଶ୍ୱାସ କରିବି ନାହିଁ ବା ତାଙ୍କ ପାଇଁ ମୋ ମନରେ ଅଧିକ ସମ୍ମାନବୋଧ ଆସିବ ନାହିଁ । ତାଙ୍କ କାମର ପ୍ରଭାବଶାଳୀ ଉଦ୍ଦେଶ୍ୟ କେବଳ ସେହି ତିନୋଟି ଯାହା ମୁଁ କିଛି ଆଗରୁ ଉପସ୍ଥାପନ କଲି । ଆଉ ଏପରି ବି ଦେଖିଲେ ସେ ତିନୋଟି ଉଦ୍ଦେଶ୍ୟ ସହ ଏଭଳି କିଛି ଜଡିତ ହୋଇନାହିଁ ଯାହାକୁ ନେଇ ଭଲ ମଣିଷଟି ଲଜ୍ୟାବୋଧ କରିବ ।

(୮)

ଯଦି ବୌଦ୍ଧିକ ଜିଜ୍ଞାସା, ବୃତ୍ତିଗତ ସ୍ୱାଭିମାନ ଓ ଉଚ୍ଚାଭିଳାଷ ଗବେଷଣାର ପ୍ରମୁଖ ଲକ୍ଷ୍ୟ ହୁଅନ୍ତି ତେବେ ସେଗୁଡିକ ଚରିତାର୍ଥ କରିବାର ସୁଯୋଗ ଜଣେ ଗଣିତଜ୍ଞ ଠାରୁ ଅନ୍ୟ କାହାରି ଅଧିକ ନାହିଁ ବୋଲି ନିଶ୍ଚିତ ଭାବରେ କୁହାଯାଇପାରିବ । ତା'ପାଠ ସବୁଠାରୁ କୌତୁହଳୋଦ୍ଦୀପକ - ଅନ୍ୟ କୌଣସି ପାଠରେ ସତ୍ୟ ଏତେ ନାଟ ଲଗାଇପାରେ ନାହିଁ । ଏହା ଭିତରେ ଅଛି ଅତ୍ୟନ୍ତ ପ୍ରାଞ୍ଜଳ ଓ ଆକର୍ଷଣୀୟ କାରିଗରୀ ଯାହା ଗଣିତଜ୍ଞ ଜଣକୁ ନିଜର ବୃତ୍ତିଗତ କୌଶଳ ପ୍ରଦର୍ଶନ ପାଇଁ ଦେଇଥାଏ ଅମାପ ସୁଯୋଗ । ଶେଷରେ ଇତିହାସ ମଧ୍ୟ ଏହାର ସାକ୍ଷୀ ଯେ ଗାଣିତିକ କୃତିତ୍ୱ ଅନ୍ୟମାନଙ୍କ ତୁଳନାରେ ଅଧିକ ଦିନ ବଞ୍ଚିରହେ, ନିଜସ୍ୱ ମୂଲ୍ୟ ଯାହା ହେଉଥାଉନା କାହିଁକି ।

କେତେକ ସଭ୍ୟତା ବିଷୟରେ ଆଲୋଚନା କଲେ ଆମେ ଏହାର ଉଦାହରଣ ପାଇପାରିବା । ବେବିଲୋନ ବା ସରିଆର ସଭ୍ୟତା କାଳଗର୍ଭରେ ଲୀନ ହୋଇ

ଯାଇଛନ୍ତି । ହମ୍ମୁରାବୀ, ସାରଗନ୍ ବା ନେବୁଚ୍ଛାଦନେଜରର ଆଜି କେବଳ ଫମ୍ପା ନାମ ଗୁଡିକ ମାତ୍ର । କିନ୍ତୁ ବେବିଲୋନୀୟ ଗଣିତ ଆଜି ବି ପଠନଯୋଗ୍ୟ ହୋଇ ରହିଛି । ବେବିଲୋନୀୟ ଷଡଦଶ-ମାପକ ପଦ୍ଧତି ଆଜିବି ଜ୍ୟୋତିର୍ବିଜ୍ଞାନରେ ବ୍ୟବହୃତ । ଅବଶ୍ୟ ଗ୍ରୀସ୍‌ବାସୀ ଏ କ୍ଷେତ୍ରରେ ସର୍ବଶ୍ରେଷ୍ଠ ଉଦାହରଣ ।

ଗ୍ରୀସ୍‌ବାସୀ ବୋଧହୁଏ ଥିଲେ ସଭ୍ୟତାର ଆଦ୍ୟ ଗଣିତଜ୍ଞ କିନ୍ତୁ ତାଙ୍କ ଗଣିତ ଆଜିବି ସତେଜ । ପ୍ରାଚ୍ୟ ଗଣିତରେ ଗାଣିତିକ ଅନୁସନ୍ଧିତ୍ସାର କିଛିଟା ଝଲକ ମିଳିପାରେ କିନ୍ତୁ ଗ୍ରୀସର ଗଣିତ ଥିଲା ପ୍ରକୃତ ଗଣିତ । ଗ୍ରୀସର ଲୋକ ହିଁ ଗଣିତକୁ ଏପରି ଏକ ଭାଷା ଦେଲେ ଯାହାକୁ ଆଧୁନିକ ଗଣିତଜ୍ଞ ବି ବୁଝିପାରିବେ । ଲିଟ୍‌ଲଉଡ୍‌ଙ୍କ ଭାଷାରେ ଗ୍ରୀସ୍‌ର ଗଣିତାଧ୍ୟାୟୀମାନେ "ଚତୁର ସ୍କୁଲ ପିଲା" ନଥିଲେ ବା "ଛାତ୍ର ବୃତ୍ତି ପରୀକ୍ଷାରେ ପରୀକ୍ଷାର୍ଥୀ" ନଥିଲେ, ସେମାନେ ଥିଲେ "ଏକ ଶିକ୍ଷା ଜଗତର ସମ୍ମାନାସ୍ପଦ ସଦସ୍ୟ ।" ତେଣୁ ଗ୍ରୀସ୍‌ର ଗଣିତ ମୋଟାମୋଟି ଭାବରେ "ଚିରସ୍ଥାୟୀ", ଏପରିକି ସେମାନଙ୍କ ସାହିତ୍ୟ ଠାରୁ ଅଧିକ । ଆସିଲସ୍‌ଙ୍କୁ ଲୋକେ ଭୁଲିଯିବେ କିନ୍ତୁ ଆର୍କିମିଡିସଙ୍କ ନାଁ ମନେରହିବ କାରଣ ଭାଷା ମରଣଶୀଳ କିନ୍ତୁ ଗଣିତ ନୁହେଁ । "ଅମରତ୍ୱ" ଶବ୍ଦ ପ୍ରୟୋଗ କଲେ ହୁଏତ ଠିକ୍ ନହୋଇପାରେ କିନ୍ତୁ ତାହାର ଯାହାବି ଅର୍ଥ ଆମେ ବୁଝୁ ସେତକ ପାଇବାର ସୁଯୋଗ ଜଣେ ଗଣିତଜ୍ଞର ବୋଧହୁଏ ସର୍ବାଧିକ ।

ଭବିଷ୍ୟତ ତା'ପ୍ରତି ନିର୍ଦ୍ଦୟ ହେବବୋଲି ଗଣିତଜ୍ଞର ଭୟ କରିବାର ଅବକାଶ ନାହିଁ । ଅମରତ୍ୱ ଅବଶ୍ୟ ବେଳେବେଳେ ହାସ୍ୟାସ୍ପଦ ବା ନିର୍ଦ୍ଦୟ ବ୍ୟବହାର ଦେଖାଇଛି; କିଏ ବା ଆମ ଭିତରୁ ଓଗ୍ ବା ଅନାନିଆସ୍ ବା ଗାଲିଲଓଙ୍କ ଭାଗ୍ୟ ନେବାକୁ ଆଗଭର ହେବ ! ଗଣିତ ଜଗତରେ ଇତିହାସ ମଧ୍ୟ ଆଶ୍ଚର୍ଯ୍ୟଜନକ କାରସାଦି ଦେଖାଇଛି । ଉଦାହରଣ ସ୍ୱରୂପ ସରଳ କାଲ୍‌କୁଲସ ପାଠ୍ୟ ପୁସ୍ତକରେ ରୋଲେଙ୍କ ନାଁ ନିୟୁଟନଙ୍କ ସମକକ୍ଷ ଗଣିତଜ୍ଞ ଭାବରେ ଦେଖିବାକୁ ମିଳେ; ଦୀର୍ଘ ଚଉଦବର୍ଷ ପୂର୍ବରୁ ହାରସେ ପ୍ରମାଣକରିଥିବା ଉପପାଦ୍ୟକୁ ବୁଝିନପାରି ଫାରେ ଆଜି ଅମର ! ନରୱେର ସର୍ବଶ୍ରେଷ୍ଠ ବ୍ୟକ୍ତି ଆବେଲଙ୍କ ଜୀବନ ନେଇ ପାଞ୍ଚଜଣ ଜ୍ଞାନାନ୍ଧ "କର୍ତ୍ତବ୍ୟପରାୟଣ" ଲୋକ ମଧ୍ୟ ଅମର । ଏ ସବୁ ବ୍ୟତିକ୍ରମ ସତ୍ତ୍ୱେ ବିଜ୍ଞାନର ଇତିହାସ ମୋଟାମୋଟି ଭାବରେ ନିରପେକ୍ଷ । ଗଣିତ କ୍ଷେତ୍ରରେ ଏହା ଆହୁରି ଅଧିକ । ଅନ୍ୟ କୌଣସି ପାଠରେ ଏତେ ପ୍ରାଞ୍ଜଳ ଓ ସର୍ବଗୃହିତ ମାନକ ଥିଲାପରି ମନେ ହୁଏନା । ତେଣୁ ଯେଉଁ ଯେଉଁ ଗଣିତଜ୍ଞମାନଙ୍କୁ ଯେଉଁଭଳି ଆସନରେ ଅଧିଷ୍ଠିତ କରାଯାଇଛି ସେମାନେ ସମସ୍ତେ

ସେଥିପାଇଁ ଯୋଗ୍ୟ । ତେଣୁ ଯଦି ପାଖରେ "ପୁଞ୍ଜି" ଅଛି ତେବେ ଗାଣିତିକ ସୁନାମ ପଛରେ ନିବେଶ କରିବା ହିଁ ହେବ ସର୍ବୋତ୍ତମ କ୍ଷତିରହିତ ବୁଦ୍ଧିମାନ ଚାଲ୍ ।

(୯)

ଉପରୋକ୍ତ କଥାସବୁ ଅଧ୍ୟାପକମାନଙ୍କ ବିଶେଷକରି ଗଣିତର ଅଧ୍ୟାପକମାନଙ୍କ ପାଇଁ ଖୁବ୍ ସାନ୍ତ୍ୱନାର କଥା । ଓକିଲ, ରାଜନୀତିଆ ତଥା ବ୍ୟବସାୟୀମାନଙ୍କ ଧାରଣା ଯେ ଜୀବନରେ ସୁଖସ୍ୱାଚ୍ଛନ୍ଦ୍ୟ ଓ ନିରାପତ୍ତା ଖୋଜୁଥିବା ଅଭିଳାଷଶୂନ୍ୟ ଡରୁଆ ଲୋକମାନେ ହିଁ ମୁଖ୍ୟତଃ ବୌଦ୍ଧିକ ବୃତ୍ତିକୁ ବାଛି ନେଇଥାଆନ୍ତି । କିନ୍ତୁ ଏହି ଅପବାଦ ସତ୍ୟର ଅପଳାପ । ଜଣେ ଅଧ୍ୟାପକ କିଛିଟା ସମର୍ପଣ କରିଥାଏ; ବିଶେଷ କରି ଅଧିକ ଧନ ଅର୍ଜନର ସୁଯୋଗକୁ । ବର୍ଷକୁ ଦୁଇ ହଜାର ପାଉଣ୍ଡ ରୋଜଗାର କରିବା ତାହା ପକ୍ଷରେ କଷ୍ଟକର ବ୍ୟାପାର । ତେଣୁ ଚାକିରୀର ନିରାପତ୍ତା ହିଁ ତାହାର ଆର୍ଥିକ ଦୁଃସ୍ଥିତିକୁ ସରଳ କରିବାରେ ସାହାଯ୍ୟ କରେ । କିନ୍ତୁ ଅର୍ଥ ଲାଳସାକୁ ନେଇ ହାଉସମ୍ୟାନ ଲର୍ଡ ସାଇମନ ବା ଲର୍ଡ ବିଭରବ୍ରୁକ୍ ହେବାକୁ ଯେତେ କୁଣ୍ଠାବୋଧ କରିଥାନ୍ତେ, ସେ ଅଧିକ କୁଣ୍ଠାବୋଧ କରିଥାଆନ୍ତେ ନିଜର ଉଚ୍ଚାଭିଳାଷର ଅବମାନନା ପାଇଁ; ସେ ଏପରି ବ୍ୟକ୍ତି ହେବାକୁ କଦାପି ଚାହିଁ ନଥାନ୍ତେ ଯାହାକୁ ଲୋକେ ଦଶ-କୋଡିଏଟି ବର୍ଷ ଭିତରେ ଭୁଲିଯିବେ ।

ଧନସମ୍ପତ୍ତି ଥାଇ ମଧ୍ୟ ବିଫଳ ହେବାର ଅନୁଭବ ଖୁବ୍ ବେଦନାଦାୟକ । ବର୍ଟ୍ରାଣ୍ଡ ରସେଲ ଥରେ ତାଙ୍କର ଏକ ଅସ୍ୱସ୍ତିକର ସ୍ୱପ୍ନ କଥା କହୁଥିବାର ମନେ ଅଛି । ସ୍ୱପ୍ନଟି ଥିଲା ଏହିଭଳି । ସମୟ ୨୧୦୦ ଖ୍ରୀଷ୍ଟାବ୍ଦ । ନିଜେ ରସେଲ ବିଶ୍ୱବିଦ୍ୟାଳୟ ପାଠାଗାରର ଉପର ମହଲାରେ ଥାଆନ୍ତି । ଦେଖୁଥାଆନ୍ତି ଯେ ପାଠାଗାରର ଜଣେ କର୍ମୀ ଗୋଟିଏ ବିରାଟ ବସ୍ତା ଧରି ଥାକରୁ ଥାକ ବୁଲୁଥାଆନ୍ତି । ସେ ପ୍ରତି ଥାକର ବହିଗୁଡିକୁ ଖଣ୍ଡ ଖଣ୍ଡକରି କାଢ଼ି ଦେଖି ସାରିବା ପରେ କିଛି ବହି ଥାକରେ ପୁଣିଥରେ ସଜାଡି ରଖୁଥାଆନ୍ତି ଓ ଆଉକିଛି ବହି ବସ୍ତାଭିତରକୁ ଫୋପାଡୁଥାଆନ୍ତି । ଶେଷରେ ସେ ମୋଟାମୋଟା ବହି ତିନୋଟି ପାଖକୁ ଆସିଲେ । ସେଗୁଡିକ ତାଙ୍କ ଲିଖିତ ପ୍ରିଙ୍କିପିଆ ମାଥମେଟିକାର ଆଉ ମିଳୁ ନଥିବା ଶେଷ ତିନିଖଣ୍ଡବୋଲି ରସେଲ ଚିହ୍ନପାରିଲେ । ପାଠାଗାର କର୍ମୀ ଜଣକ ସେଥିରୁ ଖଣ୍ଡେ ବହିକାଢ଼ିଲେ । କିଛି ପୃଷ୍ଠା ଓଲଟାଇ ଦେଖିଲେ । ବିଚିତ୍ର ଧରଣର ଗାଣିତିକ ସଙ୍କେତ ଗୁଡିକ ଦେଖି କ୍ଷଣକ ପାଇଁ ବିଚଳିତ ହେବା ଭଳି ଜଣାପଡିଲା । ତା'ପରେ ବହିଟି ବନ୍ଦକରି ହାତରେ ଧରି ଦ୍ୱନ୍ଦ୍ୱରେ ରହିଲାଭଳି ଲାଗିଲେ- ଥାକରେ ରଖିବେ ନା ବସ୍ତାକୁ ଫୋପାଡିବେ........ ।

ମୁଁ ଏଠାରେ ବୟସ ବିଷୟରେ ଅଧିକ କିଛି ଆଲୋଚନା କରିବା ଠିକ୍ ହେବ ବୋଲି ଭାବୁଛି । ବିଶେଷ କରି ଗଣିତଜ୍ଞମାନଙ୍କ ପାଇଁ ଏହା ଖୁବ୍ ଗୁରୁତ୍ୱପୂର୍ଣ୍ଣ । କୌଣସି ଗଣିତଜ୍ଞ ଭୁଲିବା ଉଚିତ୍ ନୁହେଁ ଯେ ଅନ୍ୟ ଯେକୌଣସି କଳା ବା ବିଜ୍ଞାନ ତୁଳନାରେ ଗଣିତ ଅଧିକମାତ୍ରାରେ ଯୁବକମାନଙ୍କ ଖେଳ । ଲଣ୍ଡନ ରୟାଲ ସୋସାଇଟିର ସଭ୍ୟପଦ ପାଇବାର ହାରାହାରି ବୟସ ଗଣିତ କ୍ଷେତ୍ରରେ ସର୍ବନିମ୍ନ ହେବା ହିଁ ଏହାର ଏକ ଉଜ୍ଜ୍ୱଳ ଉଦାହରଣ । ଜଣେ ଗଣିତଜ୍ଞ ମଧ୍ୟ ଜଣେ ଚିତ୍ରକର ବା କବି ଭଳି ଗୋଟିଏ ଗୋଟିଏ ଚିତ୍ରପଟର ସ୍ରଷ୍ଟା । ଗଣିତଜ୍ଞର ଚିତ୍ରପଟଟି ଅନ୍ୟମାନଙ୍କ ସୃଷ୍ଟି ତୁଳନାରେ ଯଦି ଦୀର୍ଘଜୀବୀ ହୋଇଥାଏ ତାହାର ଏକମାତ୍ର କାରଣ ହେଉଛି ସେସବୁ ଗଭୀରତମ ଚିନ୍ତନ ପ୍ରସୂତ । ଜଣେ ଚିତ୍ରକର ଚିତ୍ର ଆଙ୍କେ ବିଭିନ୍ନ ରଙ୍ଗ ଓ ଆକୃତିକୁ ନେଇ । କବି ତା' ଚିତ୍ରପଟ ତିଆରି କରେ ଶବ୍ଦକୁ ନେଇ । ଚିତ୍ରଟି ଭିତରେ ଚିନ୍ତନଟିଏ ଲୁଚିଥାଇପାରେ କିନ୍ତୁ ସେ ଚିନ୍ତନ ଅଧିକାଂଶ କ୍ଷେତ୍ରରେ ଗୁରୁତ୍ୱହୀନ ସାଧାରଣସ୍ତରର । କବିତା କ୍ଷେତ୍ରରେ ଚିନ୍ତନର ଭୂମିକା ନିଶ୍ଚୟ ଅଧିକ । କିନ୍ତୁ ହାଉସମ୍ୟାନଙ୍କ ମତରେ କବିତାରେ ଚିନ୍ତନର ଭୂମିକା ଯେତିକି ତା'ଠାରୁ ଖୁବ୍ ଅଧିକ ବୋଲି ସାଧାରଣ ଭାବରେ କୁହାଯାଇଥାଏ । ହାଉସମ୍ୟାନଙ୍କ ମତ ହେଲା, "କାବ୍ୟିକ ଚିନ୍ତନ ପରି କିଛି ଅଛି ବୋଲି ମୁଁ ବିଶ୍ୱାସ କରେ ନାହିଁ । କବିତାର ବକ୍ତବ୍ୟରେ କିଛି ନଥାଏ, ଯାହା କିଛି ଥାଏ କେବଳ ବ୍ୟକ୍ତ କରିବାର ଶୈଳୀରେ ।"

ଭୟଙ୍କର ଅସ୍ଥିର ଏ ସାଗରର
ଭରା ଜଳ ଯେତେ
ପାରିବକି ଧୋଇ ଦେଇ
ଅଭିଷିକ୍ତ ରାଜାଙ୍କ ଶରୀରୁ
ସୁବାସିତ ତୈଳ ଓ ମଲମର
ପ୍ରଲେପ ବା ସତେ ।

କବିତାଂଶର ଧାଡି ଗୁଡିକ ହୁଏତ ସୁନ୍ଦର କିନ୍ତୁ ନୁହେଁକି ସମ୍ପୂର୍ଣ୍ଣ ଚିନ୍ତନଶୂନ୍ୟ ? ଭାଗ୍ୟକୁ ବକ୍ତବ୍ୟ ଗରୁରୀ ଚିନ୍ତନର ଦାରିଦ୍ର୍ୟ ଦ୍ୱାରା ଆଦୌ ପ୍ରଭାବିତ ହୁଏ ନାହିଁ କହିଲେ ଚଳେ । ଅନ୍ୟପକ୍ଷରେ କିନ୍ତୁ ଜଣେ ଗଣିତଜ୍ଞ ଚିନ୍ତନ ବ୍ୟତୀତ ଅନ୍ୟକୌଣସି

ଉପକରଣନେଇ ତା' କାମ କରିପାରିବ ନାହିଁ । ସେଥିଲାଗି ଗଣିତଜ୍ଞର ସୃଷ୍ଟି ଦୀର୍ଘଜୀବୀ ହେବାର ସମ୍ଭାବନା ଅଧିକ କାରଣ ଶବ୍ଦଗୁଡ଼ିକୁ ସମୟ ଯେତେ ଶୀଘ୍ର ନଷ୍ଟକରିପାରେ ଉଚ୍ଚ ଚିନ୍ତାକୁ ସେତେଶୀଘ୍ର ନଷ୍ଟ କିରପାରେ ନାହିଁ ।

ଚିତ୍ରକର ବା କବିର ସୃଷ୍ଟି ଭଳି ଗଣିତଜ୍ଞର ସୃଷ୍ଟିରେ ସୌନ୍ଦର୍ଯ୍ୟ ପୂରି ରହିବା ଉଚିତ । ସେଥି ସହ ଜଡ଼ିତ ସମସ୍ତ ଭାବନା ପରସ୍ପର ସହ ସାବଲୀଳ ଭାବରେ ସମନ୍ୱୟ ରକ୍ଷା କରିବା ଦରକାର । ସୌନ୍ଦର୍ଯ୍ୟ ହିଁ ପ୍ରଥମ ପରୀକ୍ଷା; ଜଗତରେ ଅସୁନ୍ଦର ଗଣିତ ପାଇଁ କୌଣସି ସ୍ଥାନ ନାହିଁ । ଏଇଠି ଗୋଟିଏ ଭୁଲ ଧାରଣା ବିଷୟରେ କହିବା ଉଚିତ୍ ମନେ କରୁଛି । ହୁଏତ କୋଡ଼ିଏ ବର୍ଷ ତଳେ ଯେତେ ଲୋକ ଏହା ଉପରେ ବିଶ୍ୱାସ କରୁଥିଲେ ଆଜି କିଛି କମିଛନ୍ତି ତଥାପି ସେମାନଙ୍କ ସଂଖ୍ୟା କମ୍ ନୁହେଁ । ହ୍ୱାଇଟହେଡ ଏହାର ନାଁ ଦେଇଥିଲେ "ଲେଖକୀୟ ଅନ୍ଧବିଶ୍ୱାସ" । ଅନ୍ଧବିଶ୍ୱାସଟି ହେଲା ଯେ ଗଣିତ ପ୍ରେମ ବା ଗାଣିତିକ ସୌନ୍ଦର୍ଯ୍ୟବୋଧ ସବୁ ସମୟରେ କେବଳ କେତେଜଣ ଏକମୁହାଁ ସଂସାରଚ୍ୟୁତ ଅର୍ଦ୍ଧପାଗଳଙ୍କ ମଧ୍ୟରେ ସୀମିତ ।

ପ୍ରକୃତ କଥାଟି ହେଲା ଗଣିତର ସୌନ୍ଦର୍ଯ୍ୟ ପ୍ରତି ବିମୁଖ ଥିବା ଶିକ୍ଷିତ ଲୋକଟିଏ ପାଇବା ବହୁତ କଠିନ । ଗାଣିତିକ ସୌନ୍ଦର୍ଯ୍ୟର ସଂଜ୍ଞା ନିରୂପଣ କରିବା କଷ୍ଟକର ହୋଇପାରେ । କିନ୍ତୁ ଏହା ସମସ୍ତ ପ୍ରକାର ସୌନ୍ଦର୍ଯ୍ୟ ପାଇଁ ପ୍ରଯୁଜ୍ୟ- ଗୋଟିଏ ସୁନ୍ଦର କବିତା କ'ଣ ବୁଝାଇବାକୁ କଷ୍ଟ ହୋଇପାରେ କିନ୍ତୁ ଥରେ ପଢ଼ିଲେ ତାକୁ ଚିହ୍ନିବାରେ କୌଣସି ଭୁଲ ହୁଏ ନାହିଁ । ଏପରିକି ପ୍ରଫେସର ହଗବେନ୍ ଗଣିତରେ ସୌନ୍ଦର୍ଯ୍ୟର ସ୍ଥାନକୁ ଅଧଃନମିତ କରିବାକୁ ସତତ ଚେଷ୍ଟିତ ଥିଲେ ମଧ୍ୟ ଏହାର ବାସ୍ତବତାକୁ ଅସ୍ୱୀକାର କରିବାକୁ ସାହସ କରିନାହାନ୍ତି । ତାଙ୍କ କହିବା କଥା ହେଲା, "କିଛି ଲୋକ ନିଶ୍ଚିତ ଭାବରେ ଅଛନ୍ତି ଯେଉଁମାନଙ୍କ ମନରେ ଗଣିତ ପ୍ରତି ଏକ ପ୍ରକାର ନିର୍ଜୀବ ଆକର୍ଷଣ ରହିଛି ।.... । ଗାଣିତିକ ସୌନ୍ଦର୍ଯ୍ୟବୋଧ ଦ୍ୱାରା ଆକୃଷ୍ଟ ହେବା ଲୋକଙ୍କ ସଂଖ୍ୟା ନଗଣ୍ୟ ।" ତାଙ୍କ କହିବାର ମୂଳକଥା ହେଲା ଏଭଳି ଲୋକଙ୍କ ସଂଖ୍ୟା "ନଗଣ୍ୟ" ଓ ସେମାନଙ୍କ ଅନୁଭବ "ନିର୍ଜୀବ" (ଏମାନେ ପ୍ରକୃତରେ ଦୁନିଆର ମୁକ୍ତ ପାଣି ପବନ ଠାରୁ ବହୁଦୂରରେ ଅଛ କେତୋଟି ବିଶ୍ୱବିଦ୍ୟାଳୟ ପାଚେରୀ ମଧ୍ୟରେ ଆବଦ୍ଧ ଅବାଗିଆ ଏକସିଂଘିଆ ମଣିଷ) । ଏଠାରେ ସେ ହ୍ୱାଇଟହେଡଙ୍କ "ଲେଖକୀୟ ଅନ୍ଧବିଶ୍ୱାସ"ର ପୁନଃଉଚ୍ଚାରଣ କରୁଛନ୍ତି ମାତ୍ର ।

ସତକଥା ହେଲା ଗଣିତ ଠାରୁ ଅଧିକ "ଜନପ୍ରିୟ" ପାଠ ନାହିଁ କହିଲେ ଅତ୍ୟୁକ୍ତି ହେବ ନାହିଁ । ଅଧିକାଂଶ ଲୋକ ଗୋଟିଏ ସୁମଧୁର ସଙ୍ଗୀତର ସ୍ୱରକୁ ଉପଭୋଗ କଲାଭଳି ଗଣିତକୁ ମଧ୍ୟ ଆଦର କରିଥାଆନ୍ତି । ଏବଂ ଏକଥା ମଧ୍ୟ ସତଯେ ସଙ୍ଗୀତ ଅପେକ୍ଷା ଗଣିତରେ ଅଧିକ ଲୋକଙ୍କ ଆଗ୍ରହ ରହିଛି । ବାହାରକୁ କଥାଟା ଭୁଲ ଭଳି ଜଣା ପଡୁଥାଇପାରେ କିନ୍ତୁ ତା'ପଛରେ କେତେକ ସରଳ କାରଣ ରହିଛି । ଜନତାର ଭାବାବେଗକୁ ଆନ୍ଦୋଳିତ କରିବା ପାଇଁ ସଙ୍ଗୀତକୁ ବ୍ୟବହାର କରଯାଇପାରେ କିନ୍ତୁ ଗଣିତକୁ ନୁହେଁ । ଫଳତଃ ସଙ୍ଗୀତରେ ଅପାରଗ ଲୋକଟି ସାମାନ୍ୟ ଭର୍ତ୍ସନାର ଶରବ୍ୟ ହୋଇପାରେ କିନ୍ତୁ ଗଣିତର ଡର ଗାଣିତିକ ନିର୍ବୋଧତାକୁ ବି ପ୍ରଶଂସାର ପାତ୍ର କରିଦିଏ ।

ସାମାନ୍ୟ ଚିନ୍ତାକଲେ "ଲେଖକୀୟ ଅନ୍ଧବିଶ୍ୱାସ"ର ଅନଃସାରଶୂନ୍ୟତାକୁ ଦେଖିହେବ । ପ୍ରାୟ ପ୍ରତ୍ୟେକ ସଭ୍ୟ ଦେଶରେ ଗଦାଗଦା ଚେସ୍ ଖେଳାଳୀ ଅଛନ୍ତି । ଋଷିଆରେ ତ ପ୍ରାୟ ସବୁ ଶିକ୍ଷିତ ଲୋକ ଜଣେ ଜଣେ ଚେସ୍ ଖେଳାଳୀ । ପ୍ରତ୍ୟେକ ଚେସ୍ ଖେଳାଳୀ ଗୋଟିଏ ସୁନ୍ଦର ଚେସ୍‌ଖେଳକୁ ବା ଚେସ୍‌ଖେଳର ଏକ ଜଟିଳ ପରିସ୍ଥିତିକୁ ସହଜରେ ବୁଝିପାରିବେ । ପ୍ରକୃତରେ ଚେସ୍‌ଖେଳର ଜଟିଳ ଗଣ୍ଠି ବିଶୁଦ୍ଧ ଗଣିତର ଗୋଟିଏ ଗୋଟିଏ ପ୍ରଶ୍ନଭଳି । ଯେଉଁମାନେ ଏହି ଜଟିଳତାର ସୌନ୍ଦର୍ଯ୍ୟ ବୁଝନ୍ତି ପ୍ରକୃତରେ ସେମାନେ ତତ୍‌ସଂଲଗ୍ନ ଗାଣିତିକ ପ୍ରଶ୍ନଟିର ସୌନ୍ଦର୍ଯ୍ୟ କଥା ହିଁ ଭାବିଥାଆନ୍ତି ଯଦିଓ ଏହା ଅପେକ୍ଷାକୃତ ନିମ୍ନମାନର । ଚେସ୍ ଖେଳର ସବୁ ଜଟିଳସ୍ଥିତି ଗଣିତର ଗୋଟିଏ ଗୋଟିଏ ସ୍ତୁତି ମନ୍ତ୍ରଭଳି ।

ବହୁ ଅଧିକ ଲୋକ ତାସ୍‌ର ବ୍ରିଜ ଖେଳ ବା ଖବରକାଗଜ ଗୁଡିକର ପଜଲ ସ୍ତମ୍ଭରୁ ମଧ୍ୟ ଏହି ପ୍ରକାର ଶିକ୍ଷା ପାଇଥାନ୍ତି ଯଦିଓ ଚେସ୍ ଖେଳ ତୁଳନାରେ ଏସବୁ ଅନେକମାତ୍ରାରେ ସରଳ । ଏସବୁ ଖେଳର ପ୍ରବଳ ଲୋକପ୍ରିୟତା ପ୍ରାଥମିକ ଗଣିତର ଆକର୍ଷଣକାରୀ ଶକ୍ତିର ମର୍ଯ୍ୟାଦାପୂର୍ଣ୍ଣ ସ୍ୱୀକୃତିର ହିଁ ପରିଚାୟକ । ଡ୍ୟୁଡନୀ ବା କାଲିବାନ ଭଳି ଭଲଭଲ ପଜଲ ତିଆରି କରୁଥିବା କମ୍ପାନୀମାନେ ଗଣିତର ଏହି ଆକର୍ଷଣକୁ ହିଁ ପୁଞ୍ଜି କରିଥାଆନ୍ତି । ଲୋକମାନେ ଟିକେ ବୌଦ୍ଧିକ କସରତ୍ ଚାହାନ୍ତି; ଆଉ ଏହି ବୌଦ୍ଧିକ କସରତ୍ ଯୋଗାଇବାରେ ଗଣିତ ଠାରୁ କିଏ ବା ଅଧିକ ସକ୍ଷମ ?

ମୁଁ ମଧ୍ୟ ଯୋରଦେଇ କହିପାରେ ଯେ ଗୋଟିଏ ଗଣିତର ଉପପାଦ୍ୟକୁ ଆବିଷ୍କାର କରିବା ବା ପୁନଃଆବିଷ୍କାର କରିବା ଠାରୁ ଅନ୍ୟ କୌଣସି କାର୍ଯ୍ୟ ମଣିଷକୁ ଅଧିକ

ଆନନ୍ଦ ଦିଏ ନାହିଁ । ବିଖ୍ୟାତ ଲୋକମାନେ ତଥା ଗଣିତ ବିଷୟରେ କୁଭାଷା ପ୍ରୟୋଗ କରିବାକୁ ପଛାଉନଥିବା ଲୋକମାନେ ସମସ୍ତେ ଏହି ତାଲିକାର ଅନ୍ତର୍ଭୁକ୍ତ । ହର୍ବର୍ଟ ସ୍ପେନସର ନିଜ ଆତ୍ମଜୀବନୀରେ ବୃତ୍ତ ସମ୍ବନ୍ଧୀୟ ଗୋଟିଏ ଉପପାଦ୍ୟର ପୁନଃପ୍ରକାଶନ କରିଥିଲେ ଯେଉଁ ଉପପାଦ୍ୟଟିକୁ କୋଡିଏ ବର୍ଷ ବେଳେ ସେ ପ୍ରମାଣ କରିଥିଲେ । ଯଦିଓ ସେତେବେଳେ ସେ ଜାଣିନଥିଲେ ଯେ ପ୍ଲାଟୋ ସେ ଉପପାଦ୍ୟଟିକୁ ଅନ୍ତତଃ ଦୁଇହଜାରବର୍ଷ ପୂର୍ବରୁ ପ୍ରମାଣ କରିଛନ୍ତି । ପ୍ରଫେସର ସଡିଙ୍କ ଉଦାହରଣ ଅପେକ୍ଷାକୃତ ଭାବରେ ଅଧିକ ପ୍ରଯୁଜ୍ୟ ଓ ଅଧିକ ନିକଟର କଥା । ଉପପାଦ୍ୟଟି କିନ୍ତୁ ପ୍ରକୃତରେ ତାଙ୍କର ନିଜସ୍ୱ କୃତି; ହର୍ବର୍ଟଙ୍କ ଭଳି ନୁହେଁ । ନେଚର ପତ୍ରିକା ଭାଗ ୧୩୭-୯ (୧୯୩୬-୭)ରେ "ହେକ୍ସ୍ଲେଟ" ଉପରେ ପ୍ରକାଶିତ ତାଙ୍କ ଲେଖାଗୁଡିକ ଦ୍ରଷ୍ଟବ୍ୟ ।

(୧୧)

ଚେସ୍ ଖେଳରେ ସଠିକ୍ ଚାଲ୍‌ର ପ୍ରଶ୍ନ ଗୁଡିକ ଅସଲ ଗଣିତର ପ୍ରଶ୍ନ କିନ୍ତୁ କେତେକ ଦୃଷ୍ଟିରୁ ଖୁବ୍ ସହଜିଆ । ଚେସ ଚାଲ୍‌ଟି ଯେତେ ଚତୁର ଓ ଜଟିଳ ବା ମୌଳିକଭାବେ ଚମକପ୍ରଦ ମନେହେଲେ ମଧ୍ୟ ସେଥିରେ କିଛି ନା କିଛି ସାରକଥାର ଅଭାବ ରହିଥାଏ । କଥାଟି ହେଲା ଚେସ୍-ପ୍ରଶ୍ନ ସବୁ ଗୁରୁତ୍ୱପୂର୍ଣ୍ଣ ନୁହନ୍ତି । ସର୍ବୋତ୍ତମ ଗଣିତ କିନ୍ତୁ ଗାମ୍ଭୀର୍ଯ୍ୟ ଓ ସୌନ୍ଦର୍ଯ୍ୟରେ ଭରା - "ଗୁରୁତ୍ୱପୂର୍ଣ୍ଣ" ବୋଲି ହୁଏତ କହିହେବ କିନ୍ତୁ ଶବ୍ଦଟି ଠିକ୍ ସେ କଥା ବୁଝାଇବ ନାହିଁ ଯାହା ମୋ ମନରେ ଅଛି । "ଗାମ୍ଭୀର୍ଯ୍ୟ" ଶବ୍ଦଟି ମୁଁ କହିବାକୁ ଚାହୁଁଥିବା କଥାକୁ ପ୍ରକାଶ କରିବାରେ ଅଧିକ ସକ୍ଷମ ।

ମୁଁ ଏଠି ଗଣିତର ବ୍ୟବହାରିକ ଉପଯୋଗିତାର କଥା ଭାବୁନାହିଁ । ସେ ପ୍ରସଙ୍ଗକୁ ପରେ ଯିବି । ବର୍ତ୍ତମାନ କେବଳ ଏତିକି କହିବାକୁ ଚାହୁଁଛି ଯେ ଏକ ସ୍ଥୁଳ ଦୃଷ୍ଟିକୋଣରୁ ଯଦି ଆମେ ଚେସ୍ ପ୍ରଶ୍ନ ଗୁଡିକୁ ମୂଲ୍ୟହୀନ ବୋଲି ଭାବିବା ତେବେ ତାହା ସର୍ବୋଚ୍ଚ ସ୍ତରର ଗଣିତ ପାଇଁ ମଧ୍ୟ ସମାନ ଭାବରେ ପ୍ରଯୁଜ୍ୟ ହେବ । ପ୍ରକୃତରେ ଗଣିତର ଏକ ଅତ୍ୟଳ୍ପ ଅଂଶ ହିଁ ବ୍ୟବହାରିକ ଦୃଷ୍ଟିରୁ ଉପଯୋଗୀ ଓ ସେହି ଅଂଶଟି ମଧ୍ୟ ସେହି ଅନୁପାତରେ ନିମ୍ନମାନର । ଗୋଟିଏ ଗଣିତ ଉପପାଦ୍ୟର ଗାମ୍ଭୀର୍ଯ୍ୟ ତାହାର ନଗଣ୍ୟ ବ୍ୟବହାରିକ ମୂଲ୍ୟ ଉପରେ ପର୍ଯ୍ୟବେଶିତ ନୁହେଁ; ବରଂ ଏହା ଏକାଧିକ ଗାଣିତିକ ଚିନ୍ତାଧାରାମଧ୍ୟରେ ସମନ୍ୱୟ ସ୍ଥାପନ କରିବାର ଶକ୍ତି ଉପରେ ନିର୍ଭର କରେ । ଆମେ ଗୋଟିଏ ଗାଣିତିକ ବିଚାରକୁ ମହତ୍ତ୍ୱପୂର୍ଣ୍ଣ ବୋଲି ସେତେବେଳେ ଭାବିବା ଯେତେବେଳେ

ଏହା ଅନେକଗୁଡିଏ ଗାଣିତିକ ବିଋର ସହ ସାବଲୀଳ ଭାବରେ ସଂଯୁକ୍ତ ହୋଇ ଏକ ପ୍ରାଞ୍ଜଳ ବୃହତ୍ତର ବିଋରର ରୂପକଳ୍ପ ଆମ ଆଗରେ ଉପସ୍ଥାପନ କରିପାରିବ । ଏହିଭଳି ଗୁଣ ବିଶିଷ୍ଟ ଗୋଟିଏ ଗାଣିତିକ ଉପପାଦ୍ୟ ଦ୍ୱାରା କେବଳ ଗଣିତ କ୍ଷେତ୍ର ନୁହେଁ, ଅନ୍ୟାନ୍ୟ ବିଜ୍ଞାନ କ୍ଷେତ୍ରରେ ମଧ୍ୟ ମହତ୍ତ୍ୱପୂର୍ଣ୍ଣ ଅଗ୍ରଗତିର ସାଧନ ହୋଇଥାଏ । କିନ୍ତୁ କୌଣସି ଚେସ୍-ପ୍ରଶ୍ନ ବୈଜ୍ଞାନିକ ଚିନ୍ତାଧାରାର ଅଗ୍ରଗତିରେ ସହାୟକ ହେବାର ଉଦାହରଣ ନାହିଁ । ସେଥିପାଇଁ ପିଥାଗୋରାସ, ନିୟୁଟନ, ଆଇନଷ୍ଟାଇନ ପ୍ରଭୃତି ତତ୍କାଳିକ ବୈଜ୍ଞାନିକ ଚିନ୍ତାଧାରାରେ ବୈପ୍ଳବିକ ପରିବର୍ତ୍ତନ ଆଣିବାରରେ ସକ୍ଷମ ହୋଇଥିଲେ ।

ଗୋଟିଏ ଉପପାଦ୍ୟର ଗାମ୍ଭୀର୍ଯ୍ୟ କିନ୍ତୁ ତାହାର ଫଳାଫଳରେ ନିହିତ ହୋଇନଥାଏ; ଫଳାଫଳ ସବୁ ତ ଗାମ୍ଭୀର୍ଯ୍ୟର କେବଳ ପ୍ରମାଣପତ୍ର ମାତ୍ର । ଅଟ୍‌ୱେଙ୍କ ତୁଳନାରେ ସେକ୍‌ସପିଅରଙ୍କର ଇଂରାଜି ଭାଷାର ଉନ୍ମେଷ ଉପରେ ପ୍ରଭୂତ ପ୍ରଭାବ ଥିଲା କିନ୍ତୁ ଏହି କାରଣ ପାଇଁ ସେକ୍‌ସପିଅରଙ୍କୁ ଉତ୍କୃଷ୍ଟତର କବିଭାବେ ଗଣାଯାଏ ନାହିଁ । ସେ ଉତ୍କୃଷ୍ଟତର କବି ଥିଲେ କାରଣ ସେ ଉତ୍କୃଷ୍ଟତର କବିତା ଲେଖିଥିଲେ । ଅଟ୍‌ୱେଙ୍କ କବିତାଭଳି ଚେସ୍-ପ୍ରଶ୍ନ ଗୁଡିକର ନିକୃଷ୍ଟତା ଫଳାଫଳ ଉପରେ ନୁହେଁ ବରଂ ଅନ୍ତର୍ନିହିତ ଉପାଦାନ ଉପରେ ହିଁ ନିର୍ଭରକରେ ।

ମୁଁ ଆଉ ଗୋଟିଏ କଥାକୁ ସିଧାସଳଖ ଏଡାଇ ଯିବି । ଏହା ନୁହେଁ ଯେ କଥାଟି ରୁଚିସମ୍ପନ୍ନ ନୁହେଁ । ବରଂ କଥାଟି ବେଶ୍ ତାତ୍ପର୍ଯ୍ୟପୂର୍ଣ୍ଣ ଓ ଜଟିଳ । ସୌନ୍ଦର୍ଯ୍ୟବୋଧ ଉପରେ ଏକ ତାତ୍ତ୍ୱିକ ଆଲୋଚନା କରିବାର ଯୋଗ୍ୟତା ମୋ'ର ନାହିଁ । ଗୋଟିଏ ଉପପାଦ୍ୟର ସୌନ୍ଦର୍ଯ୍ୟ ଏହାର ଗଭୀରତା ଉପରେ ବହୁଳ ଭାବରେ ନିର୍ଭରକରେ । ଠିକ୍ ଯେପରି କବିତାରେ ମଧ୍ୟ ପଂକ୍ତିଗୁଡିକର ସୌନ୍ଦର୍ଯ୍ୟ କେତେକାଂଶରେ ଅନ୍ତର୍ନିହିତ ଭାବନା ଉପରେ ନିର୍ଭର କରିଥାଏ । ଶବ୍ଦସମ୍ଭାର ସୌନ୍ଦର୍ଯ୍ୟ କଥା କହିବାକୁ ଯାଇ ମୁଁ ସେକସ୍‌ପିଅରଙ୍କର ଦୁଇଟି ଧାଡିର ଉଦାହରଣ ଦେଇଥିଲି କିନ୍ତୁ

After life's fitful fever he sleeps well

(ଜୀବନ ଯନ୍ତ୍ରଣାର ଲୁଚକାଳି ପରେ, ଶୋଇଛି ସେ ସୁଶୁପ୍ତି ନିଦ୍ରାରେ)

ଆହୁରି ସୁନ୍ଦର ଲାଗୁଛି । ଶବ୍ଦ ସଜ୍ଜା ତ ପୂର୍ବଭଳି ସୁନ୍ଦର କିନ୍ତୁ ତା ସହିତ ମିଶି ରହିଛି ଭାବର ନୂତନତା ଯାହା ଆମକୁ ଆତ୍ମ ବିଭୋର କରେ । ତେଣୁ କବିତାରେ ମଧ୍ୟ ଶବ୍ଦ ଚୟନରେ ଭାବର ଏକ ଭୂମିକା ଥାଏ । ଗଣିତ କ୍ଷେତ୍ରରେ ତ କଥାଟି ଆହୁରି

ସତ୍ୟ । ସୌନ୍ଦର୍ଯ୍ୟବୋଧ ବିଷୟରେ ଆଉ ଅଧିକ ଆଲୋଚନାକୁ ମୁଁ ଯାଉନାହିଁ ।

(୧୨)

କଥାଟି ଯେତେବାଟ ଆସିଲାଣି ସେଥିରୁ ସ୍ପଷ୍ଟ ଯେ ଆଲୋଚନାକୁ ଆଗେଇ ନେବାକୁ ହେଲେ ମତେ ଏପରି "ପ୍ରକୃତ" ଉପପାଦ୍ୟଗୁଡିକର ଉଦାହରଣ ଥୋଇବାକୁ ହେବ ଯାହାକୁ ପ୍ରତ୍ୟେକ ଗଣିତଜ୍ଞ ସର୍ବୋଚ୍ଚସ୍ତରର ବୋଲି ମାନୁଥିବେ । ମୁଁ ଯେଉଁ ପ୍ରତିବନ୍ଧକଗୁଡ଼ିକ ମଧ୍ୟରେ ଲେଖୁଛି ସେ ସବୁ ମୋର ଉପରୋକ୍ତ ଲକ୍ଷ୍ୟ ହାସଲ ରାସ୍ତାରେ ଅନ୍ତରାୟ ସୃଷ୍ଟି କରୁଛନ୍ତି । ଗୋଟେପଟେ ଉଦାହରଣ ଗୁଡିକ ସରଳ ହେବା ଦରକାର । ଯେପରି ବିଶେଷ ଗଣିତଜ୍ଞାନ ନଥିବା ପାଠକର ବୋଧଗମ୍ୟ ହେଉଥିବ । ବିଶେଷ ପ୍ରାରମ୍ଭିକ ସୂଚନାର ଆବଶ୍ୟକତା ନଥିବ । ପାଠକ ଉପପାଦ୍ୟର ପ୍ରମାଣ ତଥା ବର୍ଣ୍ଣନାକୁ ସଠିକ୍ ଭାବେ ବୁଝିପାରୁଥିବ । ଏସବୁ ସର୍ତ୍ତାବଳୀ ଗୁଡିକ ସଂଖ୍ୟା-ତତ୍ତ୍ୱର ଫର୍ମାଙ୍କ ଦୁଇ-ବର୍ଗ ଉପପାଦ୍ୟ ବା ଦ୍ୱିଘାତ ବ୍ୟୁତ୍କ୍ରମ ନିୟମ ଭଳି ଗଣିତର କେତେକ ଅତ୍ୟନ୍ତ ସୌନ୍ଦର୍ଯ୍ୟପୂର୍ଣ୍ଣ ଉପପାଦ୍ୟ ଗୁଡିକୁ ଉଦାହରଣ ଭାବରେ ନ ନେବାକୁ ବାଧ କରୁଛନ୍ତି । ଅନ୍ୟପକ୍ଷରେ ମୋ ଉଦାହରଣ ଗୁଡିକ କାର୍ଯ୍ୟରତ ବୃତ୍ତିନିଷ୍ଠ ଗଣିତଜ୍ଞମାନଙ୍କ ନିତିଦିନିଆ ଗଣିତ ଭିତରୁ ଆସିବା ଉଚିତ । ଏ ସର୍ତ୍ତଟି କିଛି ସରଳ ତଥା ତର୍କଶାସ୍ତ୍ର ଓ ଗାଣିତିକ ଦର୍ଶନ ସହ ସମ୍ବନ୍ଧିତ ଉଦାହରଣଗୁଡିକୁ ମଧ୍ୟ ବାରଣ କରୁଛି ।

ଏଭଳି ପରିସ୍ଥିତିରେ ମତେ ଗ୍ରୀସ୍‌ବାସୀଙ୍କ ପାଖକୁ ଫେରିବା ଛଡା ଅନ୍ୟ ଗତି ନାହିଁ । ମୁଁ ସେମାନଙ୍କର ଦୁଇଟି ଉପପାଦ୍ୟର ଉପସ୍ଥାପନା କରିବି । ପ୍ରମାଣ ମଧ୍ୟ ଦେବି । ସେ ଦୁଇଟି "ସରଳ" ଉପପାଦ୍ୟ । ଉଭୟ ବିଷୟର ଓ କାର୍ଯ୍ୟକାରିତାରେ ସରଳତା ରହିଛି । ତା ସତ୍ତ୍ୱେ ସେ ଦୁଇଟି ଯେ ସର୍ବୋଚ୍ଚ ସ୍ତରର ଉପପାଦ୍ୟ ସେଥିରେ କୌଣସି ସନ୍ଦେହ ନାହିଁ । ସେମାନେ ଆଜି ବି ସତେଜ ଓ ମହତ୍ତ୍ୱପୂର୍ଣ୍ଣ । ସେମାନଙ୍କ ଆବିଷ୍କାରର ଦୁଇହଜାର ବର୍ଷ ବିତି ଯାଇଥିଲେ ମଧ୍ୟ ସେମାନଙ୍କ ଦେହରେ ବୟସର ଛାପ ଲାଗିପାରିନାହିଁ । ପରିଶେଷରେ ଏତିକି କୁହାଯାଇପାରେ ଯେ ଖୁବ୍ ଗାଣିତିକ କୌଶଳ ଜଣାନଥିବା ଜଣେ ବୁଦ୍ଧିମାନ ପାଠକ ଉଭୟ ଉପପାଦ୍ୟର ବକ୍ତବ୍ୟ ଓ ପ୍ରମାଣକୁ ଘଣ୍ଟାଏ ଭିତରେ ଆୟତ୍ତ କରିପାରିବ ।

୧. ପ୍ରଥମଟି ହେଉଛି ୟୁକ୍ଲିଡ୍‌ଙ୍କ ଏଲିମେଣ୍ଟ ପ୍ରଶ୍ନମାଳା ନ: ୨୦ ଅର୍ଥାତ ମୌଳିକ ସଂଖ୍ୟାଗୁଡ଼ିକର ସଂଖ୍ୟା ଅସଂଖ୍ୟ । ଏଲିମେଣ୍ଟରେ ସ୍ଥାନୀତ ଅନେକ ଗୁଡିଏ ଉପପାଦ୍ୟର ପ୍ରକୃତ ଉତ୍ସ ସନ୍ଦେହାଚ୍ଛନ୍ନ ହୋଇଥିବା ସତ୍ତ୍ୱେ ଏହି ଉପପାଦ୍ୟଟି ୟୁକ୍ଲିଡ୍‌ଙ୍କର ନୁହେଁ

ବୋଲି ସନ୍ଦେହର ବିଶେଷ କିଛି କାରଣ ଥିବାର ମନେ ହୁଏ ନାହିଁ ।

ମୌଳିକ (ପ୍ରାଇମ୍) ସଂଖ୍ୟା ଗୁଡିକ ହେଲା - (A) ୨,୩,୫,୭,୧୧,୧୩,୧୭,୧୯,୨୩,୨୯,.... ।

ଏହି ସଂଖ୍ୟା ଗୁଡିକର ଛୋଟ ଉତ୍ପାଦକ ବାହାର କରାଯାଇପାରିବ ନାହିଁ । ସେ ଦୃଷ୍ଟିରୁ ୩୭ ଓ ୩୧୭ ମଧ୍ୟ ଦୁଇଟି ମୌଳିକ ସଂଖ୍ୟା । କିନ୍ତୁ ମୌଳିକ ସଂଖ୍ୟା ଗୁଡିକୁ ନେଇ ଗୁଣନ ଦ୍ୱାରା ଅନ୍ୟ ସବୁ ସଂଖ୍ୟା ମିଳିପାରିବ ଯଥା ୬୬୬ = ୨×୩×୩×୩୭ । ଫଳତଃ ଯେଉଁ ସଂଖ୍ୟା ଗୁଡିକ ମୌଳିକ ସଂଖ୍ୟା ନୁହନ୍ତି ସେଗୁଡିକ ଗୋଟିଏ ବା ଏକାଧିକ ମୌଳିକ ସଂଖ୍ୟା ଦ୍ୱାରା ବିଭାଜ୍ୟ । ଆମକୁ ପ୍ରମାଣ କରିବାକୁ ପଡିବ ଯେ ମୌଳିକ ସଂଖ୍ୟା ଗୁଡିକର,ସଂଖ୍ୟା ଅନନ୍ତ ଅର୍ଥାତ (A) ଶ୍ରେଣୀଟିର ଶେଷ ନାହିଁ ।

ମନେ କରାଯାଉ ଯେ (A) ଶ୍ରେଣୀର ଶେଷ P ସଂଖ୍ୟାଠି ହେବ । ଅର୍ଥାତ୍ ୨,୩,୫...., P ଟି ହିଁ ସମ୍ପୂର୍ଣ୍ଣ ଶ୍ରେଣୀ । P ହେଉଛି ସବୁଠାରୁ ବଡ଼ ମୌଳିକ ସଂଖ୍ୟା । ବର୍ତ୍ତମାନ ନିମ୍ନରେ ପ୍ରଦତ୍ତ Q ସଂଖ୍ୟା କଥା ଧରାଯାଉ ।

Q = (୨×୩×୫....×P)+୧

ତେଣୁ Q ସଂଖ୍ୟାଟି ୨, ୩, ୫, ..., P ଇତ୍ୟାଦି ସଂଖ୍ୟା ମଧ୍ୟରୁ କୌଣସି ଗୋଟିଏ ହେଲେ ସଂଖ୍ୟା ଦ୍ୱାରା ବିଭାଜ୍ୟ ନୁହେଁ । କାରଣ ଏମାନଙ୍କ ମଧ୍ୟରୁ ଯେ କୌଣସି ସଂଖ୍ୟା ଦ୍ୱାରା Qକୁ ହରିଲେ ଭାଗଫଳ ୧ ରହିବ । କିନ୍ତୁ Q ଯଦି ମୌଳିକ ସଂଖ୍ୟା ନୁହେଁ ଏହା କୌଣସି ନା କୌଣସି ମୌଳିକ ସଂଖ୍ୟା ଦ୍ୱାରା ବିଭାଜ୍ୟ ହେବ । ତେଣୁ ୨,୩,୫..., P ସଂଖ୍ୟାଗୁଡିକ ଠାରୁ ବଡ଼ ଆଉ ଗୋଟିଏ ମୌଳିକ ସଂଖ୍ୟା ନିଶ୍ଚୟ ଅଛି । ଏହା "P ଠାରୁ ବଡ଼ ମୌଳିକ ସଂଖ୍ୟା ନାହିଁ" କଥାକୁ ଅମୂଳକ ସାବ୍ୟସ୍ତ କରୁଛି । ତେଣୁ ଆମ ପୂର୍ବାନୁମାନ ହିଁ ଭ୍ରମାତ୍ମକ । ଅତଏବ ମୌଳିକ ସଂଖ୍ୟା ଶ୍ରେଣୀର ଶେଷ ନାହିଁ ।

ଆମେ ଯେଉଁ ବାଟରେ ପ୍ରମାଣଟି କଲେ ତାହାକୁ ସ୍ୱୟଂ-ବିରୁଦ୍ଧାତ୍ମକ ବା ଅସମ୍ଭବ-ଇତି-ପ୍ରମାଣ ପଦ୍ଧତି (Reductio ad absurdum) ବୋଲି କୁହାଯାଏ । ୟୁକ୍ଲିଡ ଏହି ପଦ୍ଧତିଟିକୁ ବହୁତ ଭଲ ପାଉଥିଲେ । ଏହା ଗଣିତଜ୍ଞ ହାତରେ ଥିବା ଭୁଲଠିକ୍ ପ୍ରମାଣ କରିବାର ସର୍ବୋତ୍ତମ ଅସ୍ତ୍ର ଗୁଡିକ ମଧ୍ୟରୁ ଗୋଟିଏ । ପ୍ରମାଣଟିକୁ ଏପରି

ଭାବରେ ସଜାଯାଇପାରେ ଯେଉଁଥିରେ ଗୋଟିଏ ପରେ ଗୋଟିଏ ତର୍କର ଉପଯୋଗ ଅନାବଶ୍ୟକ । କିଛି ତର୍କଶାସ୍ତ୍ରୀ ସେ ବାଟକୁ ଅଧିକ ପସନ୍ଦ କରନ୍ତି । ଏହା ଚେସ୍ ଖେଳର ପ୍ରଥମ ଗ୍ରେଲ ଠାରୁ ଅଧିକ ସୂକ୍ଷ୍ମ : ଚେସ୍ ଖେଳାଳୀ କେବଳ ଗୋଟିଏ ଗୋଟିକୁ ବଳି ଦେଉଥିବା ବେଳେ ଗଣିତଜ୍ଞ ପୁରା ଖେଳକୁ ବାଜି ଲଗେଇ ଦିଏ ।

(୧୩)

୨. ମୋର ଦ୍ୱିତୀୟ ଉଦାହରଣଟି ପିଥାଗୋରାସଙ୍କ $\sqrt{2}$ (ଦୁଇର ବର୍ଗମୂଳ)ର ଅପରିମେୟତାର (irrationality) ପ୍ରମାଣ । ପ୍ରମାଣଟି ପିଥାଗୋରାସଙ୍କର ବୋଲି ଧରାଯାଉଛି । ତାଙ୍କର ନହେଲେ ବି ପ୍ରମାଣଟି ନିଶ୍ଚୟ ତାଙ୍କ ଶିକ୍ଷାଶ୍ରମର ଅବଦାନ । ଉପପାଦ୍ୟଟିର ଅଧିକ ବ୍ୟାପକ ରୂପ ୟୁକ୍ଲିଡଙ୍କ 'ଏଲିମେଣ୍ଟ'ରେ ଦେଖିବାକୁ ମିଳେ ।

(କ) ଗୋଟିଏ ପରିମେୟ (rational) ସଂଖ୍ୟାର ସଜ୍ଞା ହେଲା ଯେ ଏହାକୁ a/b ଭଗ୍ନାଂଶ ଭାବରେ ଲେଖିହେବ ଯାହାର ଲବ a ଓ ହର b ଗୋଟିଏ ଗୋଟିଏ ପୂର୍ଣ୍ଣ ସଂଖ୍ୟା । ଲବ ଓ ହର ସଂଖ୍ୟା ଦୁଇଟିର କୌଣସି ସାଧାରଣ ଗୁଣନୀୟକ ନାହାନ୍ତି ବୋଲି ଆମେ ଧରିବା । $\sqrt{2}$ ଅପରିମେୟ (irrational) ସଂଖ୍ୟା ବୋଲି କହିବା ଯାହା 2କୁ a/b ର ବର୍ଗ ଭାବରେ ପ୍ରକାଶ କରିହେବ ନାହିଁ ବୋଲି କହିବା ହିଁ ତାହା । ସେହି କଥାକୁ ପୁଣି ଆଉ ଗୋଟିଏ ପ୍ରକାର କହିହେବ ଯେ;

(ଖ) $a^2 = 2b^2$

ସମୀକରଣଟି କୌଣସି ସାଧାରଣ ଗୁଣନୀୟକ ନଥିବା ଦୁଇଟି ପୂର୍ଣ୍ଣସଂଖ୍ୟା a ଓ b ଦ୍ୱାରା ସମ୍ଭବ ନୁହେଁ । ଏହିଟି ଶୁଦ୍ଧ ଅଙ୍କର ଏକ ଉପପାଦ୍ୟ । ଏହା ଅପରିମେୟ ସଂଖ୍ୟାର ବା ତତ୍‌ସମ୍ବନ୍ଧୀୟ ତତ୍ତ୍ୱ ଜ୍ଞାନ ଉପରେ ଆଦୌ ନିର୍ଭର କରେ ନାହିଁ ।

ଆମେ ପୁଣିଥରେ ଅସମ୍ଭବ-ଇତି-ପ୍ରମାଣ ପଦ୍ଧତି ବ୍ୟବହାର କରିବା । ଧରାଯାଉ a ଓ b ସାଧାରଣ ଗୁଣନୀୟକ ନଥିବା ଦୁଇଟି ପୂର୍ଣ୍ଣ ସଂଖ୍ୟା ହୋଇଥିଲେ ବି (ଖ) ସମୀକରଣଟି ସମ୍ଭବ । (ଖ)ରୁ ନିଶ୍ଚିତ ଯେ $a^2$ ଗୋଟିଏ ଯୁଗ୍ମ ସଂଖ୍ୟା ଯେହେତୁ $2b^2$, 2 ଦ୍ୱାରା ବିଭାଜ୍ୟ । ତେଣୁ a ମଧ୍ୟ ଗୋଟିଏ ଯୁଗ୍ମସଂଖ୍ୟା କାରଣ ଅଯୁଗ୍ମ ସଂଖ୍ୟାର ବର୍ଗ ଅଯୁଗ୍ମ ସଂଖ୍ୟା ହୋଇଥାଏ । ଯଦି a ଯୁଗ୍ମ ତେବେ ଏହାକୁ ଆଉ ଗୋଟିଏ ପୂର୍ଣ୍ଣ ସଂଖ୍ୟା c କୁ ନେଇ

(ଗ) $a = 2c$ ଭାବରେ ଲେଖିହେବ । ତା'ହେଲେ

(ଘ) $2b^2 = a^2 = (2c)^2 = 4c^2$

ତେଣୁ

(ଚ) $b^2 = 2c^2$

ଅତଏବ $b^2$ ଗୋଟିଏ ଯୁଗ୍ମସଂଖ୍ୟା ବା b ମଧ୍ୟ ଗୋଟିଏ ଯୁଗ୍ମ ସଂଖ୍ୟା । ତେଣୁ a ଓ b ଉଭୟ ଯୁଗ୍ମ ସଂଖ୍ୟା । ଫଳତଃ 2 ସେମାନଙ୍କର ଗୋଟିଏ ସାଧାରଣ ଗୁଣନୀୟକ କିନ୍ତୁ ଏହା ଆମର ମୂଳ ସ୍ୱୀକାର ଅନୁସାରେ ଅସମ୍ଭବ । ଅର୍ଥାତ୍ ଆମ ପୂର୍ବାନୁମାନ ହିଁ ଭ୍ରମାତ୍ମକ ।

ପିଥାଗୋରାସଙ୍କ ଉପପାଦ୍ୟ ଅନୁସାରେ ବର୍ଗକ୍ଷେତ୍ରରେ କର୍ଣ୍ଣ ଏହାର ବାହୁ ସହ ସୁସମ୍ପର୍କିତ ନୁହେଁ ଅର୍ଥାତ ଦୁହିଁଙ୍କର ଅନୁପାତ ଏକ ଅପରିମେୟ ସଂଖ୍ୟା । ଅନ୍ୟଭାବରେ କହିଲେ ଏପରି କୌଣସି ଏକକ(unit) ନାହିଁ ଯାହାର କୌଣସି କୌଣସି ପୂର୍ଣ୍ଣସଂଖ୍ୟକ ଗୁଣୀତକଭାବରେ ଉଭୟ କର୍ଣ୍ଣ ଓ ବାହୁକୁ ପ୍ରକାଶ କରିହେବ । କାରଣ ଆମେ ଯଦି ବର୍ଗକ୍ଷେତ୍ରର ବାହୁର ଦୈର୍ଘ୍ୟକୁ ଏକ ବୋଲି ଧରିବା ତେବେ ପିଥାଗୋରାସଙ୍କ ଆଉଏକ ଜଣାଶୁଣା ଉପପାଦ୍ୟ ଅନୁଯାୟୀ କର୍ଣ୍ଣ ଦୈର୍ଘ୍ୟ dର ବର୍ଗ ହେବ

$d^2 = 1^2 + 1^2 = 2$

ଅର୍ଥାତ୍ କର୍ଣ୍ଣର ଦୈର୍ଘ୍ୟ d $(= \sqrt{2})$ ଏକ ଅପରିମେୟ ସଂଖ୍ୟା ।

ମୁଁ ସଂଖାତତ୍ତ୍ୱରୁ ଅନେକ ଗୁଡିଏ ସୁନ୍ଦର ଉପପାଦ୍ୟର ଅବତାରଣା କରିପାରେ ଯାହାର ଅର୍ଥ ଯେ କୌଣସି ଲୋକ ବୁଝିପାରିବ । ଉଦାହରଣ ସ୍ୱରୂପ "ଗଣିତର ମୌଳିକ ଉପପାଦ୍ୟ" ବୋଲି ବିବେଚିତ ଉପପାଦ୍ୟ କଥା ନିଆଯାଉ । ଏହି ଉପପାଦ୍ୟ ଅନୁସାରେ ଗୋଟିଏ ପୂର୍ଣ୍ଣ ସଂଖ୍ୟାକୁ ମୌଳିକ ସଂଖ୍ୟା ଗୁଡିକର ଗୁଣନ ଭାବରେ କେବଳ ଗୋଟିଏ ଉପାୟରେ ଲେଖାଯାଇପାରିବ । ଯଥା ୬୬୬ କୁ କେବଳ ୨×୩×୩×୩୭ ବ୍ୟତୀତ ଅନ୍ୟ କୌଣସି ଉପାୟରେ ମୌଳିକ ସଂଖ୍ୟାମାନଙ୍କର ଗୁଣନ ଭାବରେ ଲେଖି ହେବନାହିଁ । ଏହା ଅସମ୍ଭବ ଯେ ୬୬୬=୨×୧୧×୨୯ କିମ୍ବା ୧୩×୮୯ =୧୭ ×୭୩ । ସିଧାସାଧା ଗୁଣନ ଦ୍ୱାରା ଏସବୁ କଥା ପ୍ରମାଣ କରିପାରିବା । ଏହି ଉପପାଦ୍ୟଟି ଏହାର ନାମାନୁଯାୟୀ ଉଚ୍ଚତର ଗଣିତର ମୂଳଦୁଆ ସଦୃଶ । ଏହାର ପ୍ରମାଣ କଷ୍ଟ ନହେଲେ ମଧ୍ୟ କିଛି ପୂର୍ବସୂଚୀ ଆବଶ୍ୟକ କରେ ଯାହା ଜଣେ ଗଣିତରେ ରୁଚି ନଥିବା ପାଠକକୁ କ୍ଳାନ୍ତିକର ବୋଧ ହୋଇପାରେ ।

ଆଉ ଗୋଟିଏ ବିଖ୍ୟାତ ଓ ସୌନ୍ଦର୍ଯ୍ୟଭରା ଉପପାଦ୍ୟ ହେଲା ଫର୍ମାଙ୍କ "ଦୁଇବର୍ଗ" ଉପପାଦ୍ୟ । ଦୁଇ (୨) ଭଳି ଏକ ବିଶେଷ ମୌଳିକ ସଂଖ୍ୟାକୁ ବାଦ୍‌ଦେଲେ ଅନ୍ୟ ସମସ୍ତ ମୌଳିକ ସଂଖ୍ୟାଗୁଡ଼ିକୁ ଦୁଇଟି ଶ୍ରେଣୀରେ ବିଭକ୍ତ କରାଯାଇ ପାରିବ ଯଥା

୫, ୧୩, ୧୭, ୨୯, ୩୭, ୪୧,.....

ଓ ୩, ୭, ୧୧, ୧୯, ୨୩, ୩୧,....

ପ୍ରଥମ ଶ୍ରେଣୀର ସଂଖ୍ୟାଗୁଡ଼ିକୁ ୪ରେ ହରିଲେ ସବୁବେଳେ ଭାଗଫଳ ୧ ରହୁଥିବାବେଳେ ଦ୍ୱିତୀୟ ଶ୍ରେଣୀର ସଂଖ୍ୟାଗୁଡ଼ିକୁ ୪ରେ ହରିଲେ ଭାଗଫଳ ସବୁବେଳେ ୩ ରହେ । ପ୍ରଥମ ଶ୍ରେଣୀର ପ୍ରତ୍ୟେକ ସଂଖ୍ୟାକୁ ଦୁଇଟି ପୂର୍ଣ୍ଣସଂଖ୍ୟାର ବର୍ଗ ଆକାରରେ ପ୍ରକାଶ କରି ହେବ ଯଥା

୫ = ୧² + ୨²,　　　　୧୩ = ୨² +୩²

୧୭ = ୧² +୪²,　　　　୨୯ = ୨²+୫²

କିନ୍ତୁ ଦ୍ୱିତୀୟ ଶ୍ରେଣୀର କୌଣସି ସଂଖ୍ୟା ୩, ୭, ୧୧, ୧୯ ଇତ୍ୟାଦିଙ୍କୁ ଉପରୋକ୍ତ ଭାବରେ ପ୍ରକାଶ କରିହେବନାହିଁ । ପାଠକ ନିଜେ କଷିକି ଦେଖିପାରିବେ । ଏହି ହେଉଛି ଫର୍ମାଙ୍କ ଉପପାଦ୍ୟ । ଏହାକୁ ଯଥାର୍ଥରେ ଅଙ୍କର ସର୍ବୋତ୍ତମ ଉପପାଦ୍ୟମାନଙ୍କ ମଧ୍ୟରେ ଗଣାଯାଏ । ଦୁର୍ଭାଗ୍ୟବଶତଃ ବିଶେଷ ଜ୍ଞାନ ନଥିବା ଗଣିତଜ୍ଞଙ୍କ ବ୍ୟତୀତ ଅନ୍ୟ କୌଣସି ଲୋକ ପକ୍ଷରେ ଏହି ଉପପାଦ୍ୟର ପ୍ରାମାଣିକତାର ଧାରଣା ପାଇବା କଷ୍ଟକର ।

ସମୁଦାୟତତ୍ତ୍ୱ (theory of aggregates)ର ମଧ୍ୟ ବେଶ୍ କିଛି ସୁନ୍ଦର ଉପପାଦ୍ୟ ଗୁଡ଼ିଏ ଅଛନ୍ତି । କାଣ୍ଟରଙ୍କ ନିରବିଚ୍ଛିନ୍ନତା (continuum) ଯେ ଗଣନାସାପେକ୍ଷ ନୁହେଁ ଉପପାଦ୍ୟଟି ଏଗୁଡ଼ିକ ମଧ୍ୟରୁ ଗୋଟିଏ । ଏଠାରେ ଆମେ ଠିକ୍ ବିପରୀତ ଅସୁବିଧାର ସାମ୍ନାକରୁ । ଭାଷାକୁ ଠିକ୍ ଭାବରେ ବୁଝିଲେ ଉପପାଦ୍ୟଟିର ପ୍ରମାଣ ଖୁବ୍ ସହଜ । ଉପପାଦ୍ୟର ଅର୍ଥକୁ ଠିକ୍ ଭାବରେ ବୁଝିବା ପାଇଁ ବେଶ୍ କିଛି ସ୍ପଷ୍ଟିକରଣର ଆବଶ୍ୟକତା ରହିଛି । ମୁଁ କେବଳ କେତୋଟି ବଛାବଛା ଉଦାହରଣର ଅବତାରଣା କଲି । ଯଦି କୌଣସି ପାଠକ ଏଗୁଡ଼ିକର ମହତ୍ତ୍ୱ ବୁଝିବାକୁ ଅକ୍ଷମ ତେବେ ସେ ଗଣିତର କୌଣସି ଦିଗ ବୁଝିବାକୁ ଅକ୍ଷମ ବୋଲି ଧରିନେବାକୁ ହେବ ।

ମୁଁ ଆଗରୁ କହିଛି ଯେ ଜଣେ ଗଣିତଜ୍ଞ ବିଭିନ୍ନ ବିଷୟକୁ ନେଇ ଏକ ଚିତ୍ରପଟ ତିଆରି କରେ । ବିଷୟର ଗଭୀରତା ଓ ସୌନ୍ଦର୍ଯ୍ୟ ଆଧାରରେ ଚିତ୍ରପଟ ଗୁଡିକର ମୂଲ୍ୟାୟନ କରାଯିବା ଉଚିତ୍ । ଉପରୋକ୍ତ ଦୁଇଟି ଉପପାଦ୍ୟକୁ ଯିଏ ଠିକ୍ ଭାବରେ ବୁଝିଛି ସେ ନିଶ୍ଚୟ ସହମତ ହେବ ଯେ ଉପପାଦ୍ୟ ଦୁଇଟି ସୌନ୍ଦର୍ଯ୍ୟ ଓ ଗାମ୍ଭୀର୍ଯ୍ୟର କଷଟି ପଥରରେ ସଫଳତାର ସହ ଉତ୍ତୀର୍ଣ୍ଣ ହେବେ । ଆମେ ଯଦି ଉପପାଦ୍ୟ ଦୁଇଟିକୁ ଡ୍ୟୁଡିନିଙ୍କ ସବୁଠାରୁ କଷ୍ଟ ପ୍ରହେଳିକା ବା ପ୍ରବୀଣ ଚେସ୍ ଖେଳାଳୀଙ୍କ ପ୍ରସ୍ତୁତ ସବୁଠାରୁ ଜଟିଳ ଚେସ୍ ଚାଲ ସହ ତୁଳନା କରିବା ଉଭୟ ଗୁଣରେ ସେମାନଙ୍କ ଶ୍ରେଷ୍ଠତା ସ୍ପଷ୍ଟ ବାରି ହୋଇପଡିବ । ଉପପାଦ୍ୟ ଦୁଇଟି ବୌଦ୍ଧିକତା ଦୃଷ୍ଟିରୁ ଅନେକ ଅଧିକ ଗମ୍ଭୀର ଓ ସୁନ୍ଦର । କହିବାକୁ ଗଲେ ସେମାନଙ୍କ ମଧ୍ୟରେ ଏକ ଶ୍ରେଣୀଗତ ପାର୍ଥକ୍ୟ ରହିଛି । ଏଇଠି ପ୍ରଶ୍ନ ଉଠୁଛି ଯେ ଉପପାଦ୍ୟ ଦୁଇଟିର ଶ୍ରେଷ୍ଠତ୍ୱର ମୂଳକାରଣକୁ ଆମେ ଅଧିକ ପ୍ରାଞ୍ଜଳ ଭାବରେ ପ୍ରକାଶ କରିପାରିବା କି ?

(୧୪)

ପ୍ରଥମତଃ ଗାମ୍ଭୀର୍ଯ୍ୟ ଦୃଷ୍ଟିରୁ ଗାଣିତିକ ଉପପାଦ୍ୟଗୁଡିକର ଶ୍ରେଷ୍ଠତ୍ୱ ଅତ୍ୟନ୍ତ ସ୍ପଷ୍ଟ ଓ ଅକାଟ୍ୟ । ଚେସ୍ ଚାଲ ଗୁଡିକ ଚାତୁର୍ଯ୍ୟପୂର୍ଣ୍ଣ ହେଲେ ମଧ୍ୟ ସୀମିତ ଚିନ୍ତନରୁ ସୃଷ୍ଟି । ସେଗୁଡିକ ମଧ୍ୟରେ ମୂଳତଃ ବିଶେଷ ପାର୍ଥକ୍ୟ ନାହିଁ । ସେଗୁଡିକର ମଧ୍ୟ ବାହ୍ୟଜଗତରେ କୌଣସି ପ୍ରଭାବ ନାହିଁ । ଏପରିକି ଚେସ୍ ଖେଳ ଉଦ୍ଭାବିତ ହୋଇନଥିଲେ ମଧ୍ୟ ମଣିଷର ଚିନ୍ତାଧାରାରେ କୌଣସି ପରିବର୍ତ୍ତନ ପରିଲକ୍ଷିତ ହୋଇନଥାନ୍ତା । କିନ୍ତୁ ୟୁକ୍ଲିଡ ଓ ପିଥାଗୋରାସଙ୍କ ଉପପାଦ୍ୟଗୁଡିକ ମଣିଷର ଚିନ୍ତନ ପ୍ରକ୍ରିୟାକୁ ପ୍ରଭୂତ ପ୍ରଭାବିତ କରିଛନ୍ତି; ଗଣିତର ପରିସର ବାହାରେ ମଧ୍ୟ ।

ତେଣୁ ୟୁକ୍ଲିଡଙ୍କ ଉପପାଦ୍ୟ ଅଙ୍କର ଅଙ୍ଗସୌଷ୍ଠବ ଗଠନ ପାଇଁ ଅତ୍ୟନ୍ତ ଆବଶ୍ୟକ । ମୌଳିକ ସଂଖ୍ୟା ଗୁଡିକ ହିଁ ଅଙ୍କନିର୍ମାଣର କଞ୍ଚାମାଲ ସଦୃଶ । ୟୁକ୍ଲିଡଙ୍କ ଉପପାଦ୍ୟ ଆମକୁ ଆଶ୍ୱାସନା ଦେଉଛି ଯେ ଆମ ପାଖରେ ପର୍ଯ୍ୟାପ୍ତ କଞ୍ଚାମାଲ ମହଜୁଦ ଅଛି । ପିଥାଗୋରାସଙ୍କ ଉପପାଦ୍ୟଟି ଅନ୍ୟପକ୍ଷରେ ଅଧିକ ପଠନଯୋଗ୍ୟ ଓ ତାହାର ପ୍ରୟୋଗାତ୍ମକ ପରିସର ମଧ୍ୟ ଅଧିକ ବ୍ୟାପକ ।

ଆମର ଲକ୍ଷ୍ୟ କରିବା ଉଚିତ୍ ଯେ ପିଥାଗୋରାସଙ୍କ ଯୁକ୍ତିର ସୁଦୂରପ୍ରସାରୀ ସଂପ୍ରସାରଣ ସମ୍ଭବ । ନିୟମର ସାମାନ୍ୟ ପରିବର୍ତ୍ତନ ସହ, ଏହାକୁ ମଧ୍ୟ ଅନେକ

ଶ୍ରେଣୀୟ "ଅପରିମେୟ"ଙ୍କ କ୍ଷେତ୍ରରେ ବିନିଯୋଗ କରିହେବ । ଆମେ ସମଭାବରେ ପ୍ରମାଣ କରିପାରିବା-ଯେ (ଥିଓଡୋରସ ସମ୍ଭବତଃ ଏହା ହିଁ କରିଥିଲେ)

୩, ୫, ୭, ୧୧, ୧୩, ୧୭ ସଂଖ୍ୟାଗୁଡ଼ିକର

ବର୍ଗମୂଳ ଗୁଡିକ ଅପରିମେୟ କିମ୍ବା (ଥିଓଡୋରସଙ୍କ ଠାରୁ ଆଗକୁ ଯାଇ) ୨, ୧୭ ପରି ସଂଖ୍ୟାମାନଙ୍କର ଘନମୂଳ ଗୁଡିକ ମଧ୍ୟ ଅପରିମେୟ । (ହାର୍ଡି ଓ ରାଇଟଙ୍କ Introduction to the Theory of Numbers ର ଚତୁର୍ଥ ଅଧ୍ୟାୟ ଦ୍ରଷ୍ଟବ୍ୟ । ଏଥିରେ ପିଥାଗୋରାସଙ୍କ ଯୁକ୍ତିର ବିଭିନ୍ନ ଦିଗ ଯୁକ୍ତ ସାର୍ବଜନୀନତା ଓ ଥିଓଡୋରସଙ୍କ ସମ୍ପର୍କିତ ଏକ ଐତିହାସିକ ପ୍ରହେଳିକା ବିଷୟରେ ଆଲୋଚନା କରାଯାଇଛି) ।

ୟୁକ୍ଲିଡଙ୍କ ଉପପାଦ୍ୟ କହେ ଯେ ପୂର୍ଣ୍ଣ ସଂଖ୍ୟା ଗୁଡିକୁ ନେଇ ଏକ ସୁସଂଗତ ଗାଣିତିକ ପଦ୍ଧତି ସଂରଚନା କରିବା ପାଇଁ ଆମ ପାଖରେ ପର୍ଯ୍ୟାପ୍ତ ଉପାଦାନ ଉପଲବ୍ଧ ଅଛି । ଅନ୍ୟପକ୍ଷରେ ପିଥାଗୋରାସଙ୍କ ଉପପାଦ୍ୟର ବକ୍ତବ୍ୟ ହେଲା ଏପରି ଏକ ଗାଣିତିକ ପଦ୍ଧତିର ସୃଷ୍ଟି ଅନେକ ଗୁଡିଏ କ୍ଷେତ୍ରରେ ଆମର ଆବଶ୍ୟକତା ପୂରଣରେ ସକ୍ଷମ ହେବ ନାହିଁ । ଏପରି କେତେକ ଦୈର୍ଘ୍ୟର ଆମେ ସମ୍ମୁଖୀନ ହେବା ଯାହାକୁ ଆମେ କେବେହେଲେ ମାପିପାରିବା ନାହିଁ । ବର୍ଗକ୍ଷେତ୍ରରେ କର୍ଣ୍ଣ ଏହିପରି ଦୈର୍ଘ୍ୟମାନଙ୍କର ଏକ ସୁପରିଚିତ ପ୍ରତିନିଧି ମାତ୍ର । ଏହି ଆବିଷ୍କାରର ଗଭୀର ମହତ୍ତ୍ୱ ଗ୍ରୀକ୍ ଗଣିତଜ୍ଞମାନେ ତତ୍‌କ୍ଷଣାତ୍ ଉପଲବ୍ଧି କରିଥିଲେ । ସେମାନେ ଆରମ୍ଭରୁ ଧରିନେଇଥିଲେ ଯେ (ସାଧାରଣଜ୍ଞାନର ସ୍ୱାଭାବିକ କଥନ ଆଧାରରେ ବୋଲି ମୋର ଧାରଣା) ସମଜାତୀୟ ସମସ୍ତ "ଦୈର୍ଘ୍ୟ" ପାରସ୍ପରିକ ଭାବରେ ପରିମେୟ । ଅର୍ଥାତ ଯେ କୌଣସି ଦୁଇଟି ଦୈର୍ଘ୍ୟକୁ ଏକ ସାଧାରଣ ଏକକ-ଦୈର୍ଘ୍ୟର ଗୁଣିତକ ଭାବରେ ପ୍ରକାଶ କରାଯାଇପାରିବ । ଏହି ଧାରଣା ଆଧାରରେ ସେମାନେ ସମାନୁପାତୀ-ତତ୍ତ୍ୱ ଗଠନ କରିଥିଲେ । ପିଥାଗୋରାସଙ୍କ ଆବିଷ୍କାର ଉପରୋକ୍ତ ଧାରଣା ମୂଳରେ ଥିବା ଭ୍ରାନ୍ତିକୁ ପ୍ରଦର୍ଶିତ କରିବା ସହ ୟୁଡୋକ୍ସସଙ୍କୁ ଅଧିକ ଗଭୀର ତତ୍ତ୍ୱ ସୃଷ୍ଟି କିରବାରେ ସହାୟକ ହେଲା । ଏହି ନୂଆ ତତ୍ତ୍ୱଟି ପଞ୍ଚମ "ଏଲିମେଣ୍ଟ" ପୁସ୍ତକରେ ସ୍ଥାନୀତ ହୋଇଛି । ଅନେକ ଆଧୁନିକ ଗଣିତଜ୍ଞଙ୍କ ମତରେ ଏହି ତତ୍ତ୍ୱଟି ବୋଧହୁଏ ଗ୍ରୀକ୍-ଗଣିତର ସର୍ବଶ୍ରେଷ୍ଠ ସୃଷ୍ଟି । ଏହି ତତ୍ତ୍ୱଟିରେ ସନ୍ନିବିଷ୍ଟ ଆଧୁନିକତାର ସୁସ୍ପଷ୍ଟ ଝଲକ ଦେଖିଲେ ଆଶ୍ଚର୍ଯ୍ୟ ଲାଗେ । ଏହାକୁ ମଧ୍ୟ

ଅପରିମେୟ-ସଂଖ୍ୟା ତତ୍ତ୍ୱର ଅୟମାରମ୍ଭ ବୋଲି ଧରାଯାଇପାରେ ଯାହାକି ଗାଣିତିକ ବିଶ୍ଳେଷଣ କ୍ଷେତ୍ରରେ ବିପ୍ଳବର ସୂତ୍ରପାତ କରିବା ସହ ସାମ୍ପ୍ରତିକ ଦର୍ଶନ ଶାସ୍ତ୍ରକୁ ମଧ୍ୟ ପ୍ରଭାବିତ କରିଛି ।

ତେଣୁ ଦୁଇଟି ଯାକ ଉପପାଦ୍ୟର ଗାଣିତିକ ଗୁରୁତ୍ୱ ସମ୍ବନ୍ଧରେ ସନ୍ଦେହର ଅବକାଶ ନାହିଁ । ଏକଥା ମଧ୍ୟ କହି ରଖିବା ଉଚିତ୍ ହେବ ଯେ ଉଭୟ ଉପପାଦ୍ୟ ଗୁଡିକର ସାମାନ୍ୟତମ ପ୍ରାୟୋଗିକ ଗୁରୁତ୍ୱ ନାହିଁ କହିଲେ ଚଳେ । ପ୍ରାୟୋଗିକ କ୍ଷେତ୍ରରେ ଆମେ ସାଧାରଣତଃ ଛୋଟ ଛୋଟ ସଂଖ୍ୟାଗୁଡିକୁ ଭେଟିଥାଉ । କେବଳ ଜ୍ୟୋତିର୍ବିଜ୍ଞାନ ବା ପରମାଣୁ ବିଜ୍ଞାନ କ୍ଷେତ୍ରରେ ବୃହତ୍‌ସଂଖ୍ୟା ଗୁଡିକ ସଂସ୍ପର୍ଶରେ ଆମେ ଆସୁ । ଆଉ ସେସବୁର ପ୍ରାୟୋଗିକ ଗୁରୁତ୍ୱ ସମ୍ପୂର୍ଣ୍ଣ ଭାବାତ୍ମକ ଶୁଦ୍ଧଗଣିତର ପ୍ରାୟୋଗିକ ଗୁରୁତ୍ୱ ଠାରୁ କୌଣସି ଗୁଣରେ ଅଧିକ ନୁହେଁ । ଇଞ୍ଜିନିୟରମାନଙ୍କ ବିଭିନ୍ନ ପ୍ରୟୋଗ କ୍ଷେତ୍ରରେ ଆବଶ୍ୟକ ପଡୁଥିବା ସର୍ବୋଚ୍ଚ ସଂଖ୍ୟାଗତ ନିର୍ଭୁଲତା ବିଷୟରେ ମୋର ଧାରଣା ନଥିଲେ ମଧ୍ୟ ଦଶମିକ ବିନ୍ଦୁ ପରେ ଦଶଟି ଉଲ୍ଲେଖଯୋଗ୍ୟ ସଂଖ୍ୟାଯାଏ ସଠିକ ହେଲେ ଯଥେଷ୍ଟ ହେବ ବୋଲି ଭାବୁଛି । ତେଣୁ $\pi$ (ପାଏ)ର ମୂଲ୍ୟକୁ 3.14159265 ନେଲେ ଯଥେଷ୍ଟ । ଏହି ସଂଖ୍ୟାଟିକୁ ଦୁଇଟି ନଅଅଙ୍କ ବିଶିଷ୍ଟ ସଂଖ୍ୟାର ଅନୁପାତ ଭାବରେ ପ୍ରକାଶ କରିହେବ ଯଥା 314159265/ 1000,000,00 ସେହିଭଳି 1000,000,00 ଭିତରେ ମୌଳିକ-ସଂଖ୍ୟା ଗୁଡିକର ସଂଖ୍ୟା 50,847,478ଟି । ଜଣେ ଇଞ୍ଜିନିୟରର କାମ ପାଇଁ ସେତିକି ଯଥେଷ୍ଟ; ଅନ୍ୟ ମୌଳିକ ସଂଖ୍ୟା ଗୁଡିକର ଆବଶ୍ୟକତା ନାହିଁ । ଇଏ ଗଲା ୟୁକ୍ଲିଡଙ୍କ ଉପପାଦ୍ୟ କଥା । ପିଥାଗୋରାସଙ୍କ ଉପପାଦ୍ୟ ମଧ୍ୟ ଜଣେ ଇଞ୍ଜିନିୟର ପାଇଁ ବିଶେଷ ଗୁରୁତ୍ୱପୂର୍ଣ୍ଣ ନୁହେଁ । ତା ପାଇଁ ଅପରିମେୟ ସଂଖ୍ୟା ଗୁଡିକ ପ୍ରାୟତଃ ମୂଲ୍ୟହୀନ କାରଣ ତାର କାମ ମୁଖ୍ୟତଃ ଆନୁମାନିକ ହିସାବ ଉପରେ ପର୍ଯ୍ୟବେଶିତ ଓ ଆନୁମାନିକ ହିସାବ ପାଇଁ ପରିମେୟ ସଂଖ୍ୟା ଗୁଡିକ ହିଁ ଯଥେଷ୍ଟ ।

(୧୫)

ଗୋଟିଏ ଗୁରୁତ୍ୱପୂର୍ଣ୍ଣ ଉପପାଦ୍ୟରେ କିଛି ନା କିଛି ମହତ୍ତ୍ୱପୂର୍ଣ୍ଣ ଭାବନା ସଂଶ୍ଳିଷ୍ଟ ହୋଇଥାଏ । କେଉଁ କେଉଁ ଗୁଣର ଆଧାରରେ ଗୋଟେ ଗାଣିତିକ ଭାବନା ମହତ୍ତ୍ୱପୂର୍ଣ୍ଣ ହୁଏ ସେ ବିଷୟରେ କିଛି ଅଧିକ ଆଲୋଚନା କରିବା ଏଠାରେ ସମିଚୀନ ହେବ ବୋଲି ଭାବୁଛି । କାମଟି ଅବଶ୍ୟ ବେଶ୍ କଷ୍ଟ ।

ଆଉ ମୁଁ ଯେଉଁ ତଥ୍ୟଟି ଉପସ୍ଥାପନ କରିବି ତାହାଯେ ଅତ୍ୟନ୍ତ ଉପାଦେୟ ସେ କଥା ମଧ କହିବି ନାହିଁ । ଉପରୋକ୍ତ ଦୁଇଟି ଉପପାଦ୍ୟ ଭଳି ଗୋଟିଏ ମହତ୍ତ୍ୱପୂର୍ଣ୍ଣ ଭାବନା ସଂସ୍ପର୍ଶରେ ଆସିଲେ ଆମେ ତାକୁ ନିଶ୍ଚୟ ଚିହ୍ନି ପାରିବା । କିନ୍ତୁ ଚିହ୍ନିବାର କ୍ଷମତା ଅତ୍ୟୁଚ୍ଚ ସ୍ତରର ଗାଣିତିକ ବ୍ୟୁତ୍ପତ୍ତି ଓ ସମାନସ୍ତରର ଗାଣିତିକ ଭାବନା ଗୁଡିକ ସହ ବର୍ଷ ବର୍ଷର ସାହାଚର୍ଯ୍ୟର ଅପେକ୍ଷା ରଖେ । ତେଣୁ ମୁଁ ଏଭଳି ଏକ ବିଶ୍ଳେଷଣର ଅବତାରଣା ନିମିତ୍ତ ଚେଷ୍ଟା କରୁଛି ଯାହାକି ସମ୍ପୂର୍ଣ୍ଣ ଭାବେ ଯଥେଷ୍ଟ ନହେଲେ ମଧ ଯେତେଦୂର ସମ୍ଭବ ଯୁକ୍ତିନିଷ୍ଠ ଓ ବୋଧଗମ୍ୟ ହେବ । ସେଥିପାଇଁ ଦୁଇଟି ଉପାଦାନର ନିତାନ୍ତ ଆବଶ୍ୟକତା ଅଛି; ଗୋଟିଏ ହେଲା ଆଲୋଚନାର ସାର୍ବଜନୀନତା ଓ ଅନ୍ୟଟି ଗଭୀରତା ଯଦିଓ ଦୁଇଟି ଯାକର ବସ୍ତୁନିଷ୍ଠ ସଞ୍ଜ୍ଞା ନିର୍ଣ୍ଣୟ ଏକ ସହଜ ବ୍ୟାପାର ନୁହେଁ ।

ଗୋଟିଏ ମହତ୍ତ୍ୱପୂର୍ଣ୍ଣ ଗାଣିତିକ ଭାବନା ବା ଏକ ଗୁରୁତ୍ୱପୂର୍ଣ୍ଣ ଉପପାଦ୍ୟର ବିଷୟଗତ ସାଧାରଣ ବ୍ୟାପକତା (Generalisation) ବେଶ୍ ଜରୁରୀ । ଅର୍ଥାତ୍ ଭାବନାଟି ଅନେକ ଗୁଡିଏ ଗାଣିତିକ ସଂଗଠନର ଅଂଶବିଶେଷ ହୋଇଥିବ ଅବା ବିଭିନ୍ନ ଧରଣର ଅନେକ ଗୁଡିଏ ଉପପାଦ୍ୟ ପ୍ରମାଣରେ ଉପଯୋଗ ହେଉଥିବ । ସେହି ସ୍ତରୀୟ ଉପପାଦ୍ୟଟି ପିଥାଗୋରାସ ଉପପାଦ୍ୟ ଭଳି ଉପରକୁ ନିର୍ଦ୍ଦିଷ୍ଟ ଗୁଣ ସମ୍ପନ୍ନ ଭଳି ବିବେଚିତ ହେଉଥିଲେ ହେଁ ବ୍ୟାପକ ସମ୍ପ୍ରସାରଣକ୍ଷମ ହୋଇଥାଏ । ସମଜାତୀୟ ଅନେକ ଉପପାଦ୍ୟ ଗୁଡିକର ପ୍ରତିନିଧି ଭାବରେ ବିବେଚିତ ହୁଏ । ଉପପାଦ୍ୟଟିର ପ୍ରମାଣ କରିବା ଅବକାଶରେ ଅନେକ ଗୁଡିଏ ଗାଣିତିକ ଭାବନା ମଧ୍ୟରେ ଥିବା ସମ୍ପର୍କ ସବୁ ବାରି ହୋଇଯାଏ । ଏସବୁ କଥା ଅସ୍ପଷ୍ଟ ଓ ଯୁକ୍ତି ସାପେକ୍ଷ ଲାଗୁଥାଇପାରେ । କିନ୍ତୁ ଏପ୍ରକାର ଗୁଣ ବିଯୁକ୍ତ ହୋଇ ଯେ ଗୋଟିଏ ଗାଣିତିକ ଉପପାଦ୍ୟ ଗୁରୁତ୍ୱପୂର୍ଣ୍ଣ ଉପପାଦ୍ୟର ମର୍ଯ୍ୟାଦା ପାଇପାରିବ ନାହିଁ ସେକଥା ସହଜେ ଅନୁମେୟ । ଆମେ କେବଳ ଗଣିତରେ ଭର୍ତ୍ତି ହୋଇ ରହିଥିବା କୌତୁହଳପୂର୍ଣ୍ଣ କଥାବସ୍ତୁ ଗୁଡିକର ଉଦାହରଣ ଆଡେ ଦୃଷ୍ଟି ଦେଲେ ହିଁ ଯଥେଷ୍ଟ ହେବ । ମୁଁ ରାଉଜେ ବଲ୍‌ଙ୍କ "ଗାଣିତିକ ଚିତ୍ତ ବିନୋଦନ" (ଏକାଦଶ ସଂସ୍କରଣ, ୧୯୩୯, H.S.M. Coxeterଙ୍କ ଦ୍ୱାରା ସଂଶୋଧିତ) ବହିରୁ ଦୁଇଟି ବିକ୍ଷିପ୍ତ ଉଦାହରଣ ଦେଉଛି ।

(କ) 8712 ଓ 9801 କେବଳ ଦୁଇଟି ଚରିଅଙ୍କ ବିଶିଷ୍ଟ ସଂଖ୍ୟା ଯାହାର

ଅଙ୍କ ଗୁଡିକୁ ଓଲଟାଇ ଲେଖିଲେ ନୂଆ ସଂଖ୍ୟା ଦୁଇଟିର ଏହି ସଂଖ୍ୟା ଦୁଇଟି ପୂର୍ଣ୍ଣ ଗୁଣିତକ ଯଥା

$8712 = 4 \times 2178$ ଓ $9801 = 9 \times 1089$

10,000 ଭିତରେ ଏଭଳି ଗୁଣଥିବା ଅନ୍ୟ କୌଣସି ସଂଖ୍ୟା ନାହିଁ ।

(ଖ) ୧କୁ ଛାଡି କେବଳ ଚାରିଟି ସଂଖ୍ୟା ଅଛନ୍ତି ଯେଉଁ ଗୁଡିକ ସେମାନଙ୍କ ଅଙ୍କ ଗୁଡିକର ଘନର ସମଷ୍ଟି ସହ ସମାନ ଯଥା;

$153 = 1^3+5^3+3^3$ ; $370 = 3^3+7^3+0^3$

$371 = 3^3+7^3+1^3$ ; $407 = 4^3+0^3+7^3$

ଏଗୁଡିକ ଗୋଟିଏ ଗୋଟିଏ ବିଚିତ୍ର କଥା । ସେହି ଦୃଷ୍ଟିରୁ ପ୍ରହେଳିକା ସାରଣୀ ବା ସାଧାରଣ ଲୋକପାଇଁ ବେଶ୍ ଆନନ୍ଦଦାୟକ, କିନ୍ତୁ ଜଣେ ଗଣିତଜ୍ଞ ନିକଟରେ ଏହାର କୌଣସି ଆକର୍ଷଣ ନାହିଁ । ଏ ଗୁଡିକର ପ୍ରମାଣ ସାମାନ୍ୟ ଶ୍ରମସାପେକ୍ଷ ହେଲେ ମଧ ନା କୌତୁହଳବର୍ଦ୍ଧକ ନା କଷ୍ଟ । ଏ ପ୍ରକାର ଉପପାଦ୍ୟ ଗୁଡିକ ଗୁରୁତ୍ୱପୂର୍ଣ୍ଣ ନୁହଁନ୍ତି । ଏହାର ଗୋଟିଏ କାରଣ ହେଲା ଏ ଗୁଡିକର ବକ୍ତବ୍ୟ ଓ ପ୍ରମାଣର ନିର୍ଦ୍ଦିଷ୍ଟ ଧାରା । ଯାହାର କୌଣସି ଉଲ୍ଲେଖନୀୟ ବ୍ୟାପକତା ବା ସମ୍ପ୍ରସାରଣ କ୍ଷମତା ନାହିଁ ।

(୧୬)

"ସାଧାରଣତ୍ୱ" ଗୋଟିଏ ଅନେକାର୍ଥବାହୀ ଶବ୍ଦ । କହିବାକୁ ଗଲେ ଏକ ବିପଜ୍ଜନକ ଶବ୍ଦ । ତେଣୁ ଏହା ଯେପରି ଆମ ଆଲୋଚନାକୁ ସମ୍ପୂର୍ଣ୍ଣ ଭାବରେ ପ୍ରଭାବିତ ନକରେ ସେଥିପ୍ରତି ସତର୍କ ରହିବା ନିତାନ୍ତ ଆବଶ୍ୟକ । ଗଣିତରେ ତଥା ଗଣିତ ସମ୍ବନ୍ଧୀୟ ଲେଖାରେ ଏହା ଅନେକ ଅର୍ଥରେ ବ୍ୟବହୃତ ହୋଇଛି । ସେଥିମଧ୍ୟରୁ ତର୍କଶାସ୍ତ୍ରୀମାନେ ଯୁକ୍ତିଯୁକ୍ତ ଭାବରେ ଖୁବ୍ ଗୁରୁତ୍ୱ ଆରୋପ କରୁଥିବା ଗୋଟିଏ ଅର୍ଥ ଆମ ପାଇଁ ସମ୍ପୂର୍ଣ୍ଣ ଭାବରେ ଅର୍ଥହୀନ । ଏହି ଦୃଷ୍ଟିରୁ, ସଜ୍ଞା ନିରୂପଣର କ୍ଲିଷ୍ଟତା ଭିତରେ ନପଶି ଆମେ କହିପାରିବା ଯେ, ସମସ୍ତ ଗାଣିତିକ ଉପପାଦ୍ୟ ଗୁଡିକ ସମଭାବରେ ଓ ସର୍ବତୋଭାବରେ "ସାର୍ବଜନୀନ" ବା "ସାଧାରଣ" ।

ହ୍ୱାଇଟହେଡ୍‌ଙ୍କ (Science and Modern World ପୃଷ୍ଠା ୩୩) ଭାଷାରେ "ଗଣିତର ନିଶ୍ଚିତତା ତାହାର ସମ୍ପୂର୍ଣ୍ଣ ବସ୍ତୁନିରପେକ୍ଷ ଭାବାତ୍ମକ ସାଧାରଣତ୍ୱ ଉପରେ ହିଁ ନିର୍ଭରଶୀଳ ।" ଆମେ ଯେତେବେଳେ ୨+୩=୫ ବୋଲି କହୁ ସେତେବେଳେ ତିନି ଦଳ "ପଦାର୍ଥ"ମାନଙ୍କ ମଧ୍ୟରେ ଥିବା ଏକ ସମ୍ପର୍କକୁ ବୁଝାଉ । ଏହି ପଦାର୍ଥ

ଗୁଡିକ ଆମ୍ବ, ପିଜୁଳି, ପଇସା ବା କୌଣସି ନିର୍ଦ୍ଦିଷ୍ଟ ପ୍ରକାରର ପଦାର୍ଥକୁ ବୁଝାଏ ନାହିଁ । ବରଂ କେବଳ ପଦାର୍ଥ ଅର୍ଥାତ୍ ଯେ କୌଣସି ପ୍ରକାର ପଦାର୍ଥକୁ ହିଁ ବୁଝାଏ । ବକ୍ତବ୍ୟଟିର ଅର୍ଥ ପ୍ରତି ଦଳ ମଧ୍ୟରେ ଥିବା ଏକକ ପଦାର୍ଥ ଗୁଡିକର ଗୁଣଗ୍ରାମ ଉପରେ ଆଦୌ ନିର୍ଭରଶୀଳ ନୁହେଁ । '୨', '୩', '୫', '+', ବା '-' ଭଳି ସମସ୍ତ ଗାଣିତିକ ସଙ୍କେତ ବା 'ବସ୍ତୁ' ଓ 'ସମ୍ପର୍କ' ସମ୍ପୂର୍ଣ୍ଣ ଭାବରେ ବସ୍ତୁନିରପେକ୍ଷ ବା ଭାବାତ୍ମକ ହୋଇଥିବା ଦୃଷ୍ଟିରୁ ସମ୍ପୂର୍ଣ୍ଣଭାବରେ 'ସାଧାରଣ' ବା 'ସାର୍ବଜନୀନ' ମଧ୍ୟ । ଏହି ଦୃଷ୍ଟିରୁ ହ୍ୱାଇଟ୍‌ହେଡଙ୍କ ବାକ୍ୟର ଗୋଟିଏ ଶବ୍ଦ ଅଦରକାରୀ । କାରଣ ବସ୍ତୁନିରପେକ୍ଷ ଭାବାତ୍ମକତା ହିଁ ସାଧାରଣତ୍ୱ ବା ସାର୍ବଜନୀନତା ।

ସାଧାରଣତ୍ୱର ଏହି ଅର୍ଥ ଖୁବ୍ ଗୁରୁତ୍ୱପୂର୍ଣ୍ଣ । ତର୍କଶାସ୍ତ୍ରୀମାନେ ଏହି କଥାଟି ଉପରେ ବିଶେଷ ଗୁରୁତ୍ୱ ଦେଇ ଉଚିତ୍ କରିଛନ୍ତି କାରଣ ଏହା ଏପରି ଏକ ଦେହଶୁଆ ସତ୍ୟ ବହନ କରେ ଯାହାକି ଜ୍ଞାନୀ ବିଶେଷଜ୍ଞଙ୍କ ନଜରରୁ ମଧ୍ୟ ଖସିଯିବାର ଆଶଙ୍କା ଅଛି । ଉଦାହରଣ ସ୍ୱରୂପ ଅନେକ ସମୟରେ ଜଣେ ଜଣେ ଜ୍ୟୋତିର୍ବିଜ୍ଞାନୀ ବା ପଦାର୍ଥବିଜ୍ଞାନୀ କିଛି ଭୌତିକ ଘଟଣାର "ଗାଣିତିକ ପ୍ରମାଣ" ଟିଏ ପାଇଛନ୍ତି ବୋଲି ଦାବି କରିଥାଆନ୍ତି । କିନ୍ତୁ ଏପରି ଦାବି ଆକ୍ଷରିକ ଦୃଷ୍ଟିରୁ ସମ୍ପୂର୍ଣ୍ଣ ନିରାଧାର । "ଆସନ୍ତାକାଲି ପରାଗ ଦୃଶ୍ୟହେବ"; ଏକଥା ଗାଣିତିକ ଉପାୟରେ ପ୍ରମାଣ କରିହେବ ନାହିଁ କାରଣ ପରାଗ ହେଉ ବା ଅନ୍ୟ କୌଣସି ଭୌତିକ ଘଟଣା ହେଉ, ଏଗୁଡିକ ଗଣିତର ନିରୋଳା ତାତ୍ତ୍ୱିକ ଜଗତର ଅଂଶବିଶେଷ ନୁହଁନ୍ତି । ମୋର ଆଶା ଯେ ଜ୍ୟୋତିର୍ବିଜ୍ଞାନୀମାନେ ଯେତେ ସଂଖ୍ୟକ ପରାଗର ସଠିକ ପୂର୍ବାନୁମାନ କରିଥାଆନ୍ତୁ ପଛେ ଉପରୋକ୍ତ ଯୁକ୍ତି ସହ କଷ୍ଟରେ ହେଲେ ମଧ୍ୟ ସହମତ ହେବେ ।

ଆମେ ଯେ ବର୍ତ୍ତମାନ ଏପ୍ରକାର "ସାର୍ବଜନୀନତା" ବିଷୟରେ କଥା ହେଉନୁ ସେକଥା ପରିଷ୍କାର ହୋଇଯିବା ଉଚିତ୍ । ଆମେ ଦୁଇଟି ଉପପାଦ୍ୟ ମଧ୍ୟରେ ଥିବା ସାର୍ବଜନୀନତାର ଭିନ୍ନତା କଥା ହେଉଛେ ଯେତେବେଳେ ହ୍ୱାଇଟହେଡ୍‌ଙ୍କ ଦୃଷ୍ଟିରେ ଉଭୟ ଉପପାଦ୍ୟ ସମଭାବରେ ସାର୍ବଜନୀନ । ଅର୍ଥାତ୍ (୧୫) ପରିଚ୍ଛେଦର (a) ଓ (b) ପରି ମାମୁଲି ଉପପାଦ୍ୟ ଦ୍ୱୟ ୟୁକ୍ଲିଡ୍ ବା ପିଥାଗୋରାସଙ୍କ ଉପପାଦ୍ୟ ସହ ସମଭାବାତ୍ମକ ଓ ସମାନଭାବରେ ସାର୍ବଜନୀନ । ଚେସ୍ ଖେଳର ପ୍ରହେଳିକା ଗୁଡିକ ମଧ୍ୟ ସେହି ଜାତିର । ଚେସ୍ ପ୍ରହେଳିକା ଗୁଡିକ, ଗୋଟି ଗୁଡିକ ଧଳା କି କଳା ବା ନାଲି କି ସବୁଜ ଏହା ଉପରେ ନିର୍ଭରଶୀଳ ନୁହେଁ ; ଏପରିକି ଗୋଟି ଗୁଡିକର ଅସ୍ତିତ୍ୱ ଉପରେ ମଧ୍ୟ ନୁହେଁ । ଜଣେ ବିଚକ୍ଷଣ ଖେଳାଳୀ ସମସ୍ୟାଟିକୁ ପୁରାପୁରି ନିଜ ମୁଣ୍ଡରେ ଧରି ରଖିପାରିବେ ଯାହାକୁ କି ଆମେ ବୋର୍ଡ଼ ଉପରେ କିଛି ଶ୍ରମ ସ୍ୱୀକାର କରି

ପୁନର୍ଗଠନ ହିଁ କରିଥାଉ । ସେସ ବୋର୍ଡ୍ ଓ ଗୋଟି ଗୁଡ଼ିକର କାମ ହେଲା କେବଳ ଆମର ଶିଥିଳ କଳ୍ପନାଶକ୍ତିକୁ ଉଜ୍ଜୀବିତ କରିବା; ଅଙ୍କ ପଢ଼ାଇବାବେଳେ କଳାପଟା ଓ ଚକ୍ ଖଡ଼ିର ଆବଶ୍ୟକତା ଠାରୁ ଏଗୁଡ଼ିକର ଆବଶ୍ୟକତା କୌଣସି ଗୁଣରେ ଅଧିକ ନୁହେଁ ।

ପ୍ରତ୍ୟେକ ଗାଣିତିକ ଉପପାଦ୍ୟରେ ଦେଖିବାକୁ ମିଳୁଥିବା ସାର୍ବଜନୀନତା କଥା ଆମେ ଚର୍ଚ୍ଚା କରିବାକୁ ଋହୁଁ ନାହୁଁ ବରଂ କିଛି ଅଧିକ ସୂକ୍ଷ୍ମ ଓ ଅସ୍ପଷ୍ଟ ସାର୍ବଜନୀନତା କଥା କହୁଛୁ ଯାହାର ଏକ ସ୍ଥୂଳଚିତ୍ର (୧୫) ପରିଚ୍ଛେଦରେ ମୁଁ ଦେବାକୁ ଚେଷ୍ଟା କରିଛି । ଏମିତି ବି ଏପ୍ରକାର ସାର୍ବଜନୀନତା ଉପରେ ମାତ୍ରାଧିକ୍ୟ ଗୁରୁତ୍ୱ ଆରୋପ ଠାରୁ ସତର୍କତା ପୂର୍ବକ ଦୂରେଇ ରହିବା ଆବଶ୍ୟକ (ଯାହାକି ହ୍ୱାଇଟହେଡ୍‌ଙ୍କ ଭଳି ତର୍କଶାସ୍ତ୍ରୀମାନେ କରୁଛନ୍ତି ) । ଆଧୁନିକ ଗଣିତର ସର୍ବୋଚ୍ଚ ସଫଳତା କେବଳ "ସୂକ୍ଷ୍ମ ସାର୍ବଜନୀନତା ଉପରେ ପ୍ରସ୍ତପ୍ରସ୍ତ ସୂକ୍ଷ୍ମ ସାର୍ବଜନୀନତା ଲଦି ଦେବାରେ" (Science and Modern World, ପୃ.-୪୪)ନିହିତ ନୁହେଁ । ପ୍ରତ୍ୟେକ ଉଚ୍ଚକୋଟୀର ଉପପାଦ୍ୟରେ କିଛି ମାତ୍ରାରେ ସାର୍ବଜନୀନତା ରହିବାକୁ ବାଧ କିନ୍ତୁ "ଅତିଲେମ୍ବୁ ଚିପୁଡ଼ିଲେ ପିତା" ପରି ଏହାର ମାତ୍ରାଧିକ୍ୟ କେବଳ ନୀରସତାକୁ ହିଁ ନିମନ୍ତ୍ରଣ କରିଆଣିବ । "ପ୍ରତ୍ୟେକ ଜିନିଷ ନିଜେ ଯାହା ସେୟା ଓ ଅନ୍ୟ କିଛି ନୁହେଁ" ଓ ସେମାନଙ୍କ ମଧ୍ୟରେ ଥିବା ଭିନ୍ନତା ବି ସେମାନଙ୍କ ମଧ୍ୟରେ ଥିବା ସାମଞ୍ଜସ୍ୟ ଭଳି ଆନନ୍ଦପ୍ରଦ । ଜଣେ ଲୋକ ସର୍ବଗୁଣସମ୍ପନ୍ନ ବୋଲି ଆମେ ତା'ସହ ବନ୍ଧୁତ୍ୱ କରିନଥାଉ ବରଂ ସେ ଯେପରି ସେହିପରି ବୋଲି ହିଁ ଆମେ ତାକୁ ଭଲ ପାଇଥାଉ । ଅଙ୍କରେ ମଧ ଠିକ୍ ସେଇୟା । ଅନେକ ଗୁଡ଼ିଏ ଗାଣିତିକ ସୃଷ୍ଟି ଭିତରେ ଯଦି କେବଳ ଗୋଟିଏ ସାଧାରଣ ଗୁଣ ଦେଖିବାକୁ ମିଳେ ତେବେ ସେଗୁଡ଼ିକ ଭାବାକର୍ଷଣ ହରାଇ ବସନ୍ତି । ପର୍ଯ୍ୟାପ୍ତ ବ୍ୟକ୍ତିତ୍ୱ ବିନା ଗାଣିତିକ ଭାବନା ମଳିନ ହୋଇଯାଏ । ଏହି କ୍ଷେତ୍ରରେ ଅନ୍ତତଃ ହ୍ୱାଇଟହେଡ୍‌ଙ୍କୁ ଉଦ୍ଧାର କରି ମୋ ସପକ୍ଷରେ କହିପାରିବି ଯେ "ସୁନ୍ଦର ଅନନ୍ୟତାସମ୍ପନ୍ନ (Science and Modern World, ପୃ.-୪୬) ବୃହତ୍ତର ସାର୍ବଜନୀନତା ହିଁ ସଫଳ ସୃଷ୍ଟିର ପ୍ରତୀକ ।"

(୧୭)

ଗୋଟିଏ ମୂଲ୍ୟବାନ ଚିନ୍ତାର ଯେଉଁ ଦ୍ୱିତୀୟ ଗୁଣଟିର ମୁଁ ଆଶା ରଖେ ସେହିଟି ହେଲା ଗଭୀରତା । ଏହାର ସଂଜ୍ଞା ନିରୂପଣ ଆହୁରି କଷ୍ଟ । ଜଟିଳତା ସହ ଗଭୀରତାର କିଛି ନା କିଛି ସମ୍ପର୍କ ତ ନିଶ୍ଚୟ ରହିଛି । ଭାବନାଟି ଯେତେ ଗଭୀର ହେବ ତାକୁ

ବୁଝିବା ସେତିକି କଠିନ । ତଥାପି ଗଭୀରତା ଓ ଜଟିଳତା ସମାନ କଥା ନୁହେଁ । ପିଥାଗୋରାସଙ୍କ ଉପପାଦ୍ୟ ମୂଳରେ ଥିବା ଭାବନା ଓ ତାହାର ବ୍ୟାପ୍ତି ଖୁବ୍ ଗଭୀର କିନ୍ତୁ କୌଣସି ଗଣିତଜ୍ଞ ପକ୍ଷରେ ତାକୁ ବୁଝିବା କଷ୍ଟ ନୁହେଁ । ଅନ୍ୟପକ୍ଷରେ ଡାୟୋଫାଣ୍ଟିନ ଉପପାଦ୍ୟ ଗୁଡିକ ଭଳି କେତେକ ମାମୁଲି ଉପରଠାଉରିଆ ଉପପାଦ୍ୟ ଅଛନ୍ତି ଯାହାର ପ୍ରମାଣ ବେଶ୍ କଷ୍ଟକର । (ଯେଉଁଠାରେ ସମୀକରଣ ଗୁଡିକର ପୂର୍ଣ୍ଣସଂଖ୍ୟା ଭିତ୍ତିକ ସମାଧାନ ନିର୍ଣ୍ଣୟ କରାଯାଏ ।)

ଏଯାବତ୍ ଆଲୋଚନାରୁ ଜଣାପଡୁଛି ଯେ ବିଭିନ୍ନ ଗାଣିତିକ ଭାବନା ସବୁ ବିଭିନ୍ନ ଶ୍ରେଣୀଭୁକ୍ତ ହୋଇ ସଜା ହୋଇଛନ୍ତି । ପ୍ରତ୍ୟେକ ଶ୍ରେଣୀୟ ଭାବନା ଉଭୟ ନିଜ ଶ୍ରେଣୀରେ ଥିବା ଅନ୍ୟାନ୍ୟ ଭାବନା ତଥା ଉପର ଓ ତଳ ଶ୍ରେଣୀୟ ଭାବନାଗୁଡିକ ସହ ବେଶ୍ ଜଟିଳ ସମ୍ପର୍କ ଦ୍ୱାରା ଛନ୍ଦାଛନ୍ଦି ହୋଇ ରହିଛନ୍ତି । ସ୍ତର ଯେତେ ମୌଳିକ, ଭାବନାଟି ସେତେ ଗଭୀର (ସେହି ପରିମାଣରେ ଜଟିଳ ମଧ୍ୟ) । ସେହି ଦୃଷ୍ଟିରୁ "ଅପରିମେୟ"ର ଧାରଣା ପୂର୍ଣ୍ଣ ସଂଖ୍ୟାର ଧାରଣା ଠାରୁ ଓ ପିଥାଗୋରାସଙ୍କ ଉପପାଦ୍ୟ ୟୁକ୍ଲିଡଙ୍କ ଉପପାଦ୍ୟ ଠାରୁ ଗଭୀରତର ।

ଆସନ୍ତୁ ଆମେ ପୂର୍ଣ୍ଣ ସଂଖ୍ୟା ଗୁଡିକ ମଧ୍ୟରେ ଥିବା ସମ୍ପର୍କ ବା ଗୋଟିଏ ଶ୍ରେଣୀଭୁକ୍ତ ଅନ୍ୟ କିଛି ଗାଣିତିକ ବସ୍ତୁମାନଙ୍କ ଆଡେ ଦୃଷ୍ଟି ଦେବା । ଏପରି ହୋଇପାରେ ଯେ ଆମେ ଏହି ସମ୍ପର୍କ ଗୁଡିକ ମଧ୍ୟରୁ କେତୋଟିକୁ ସମ୍ପୂର୍ଣ୍ଣ ଭାବରେ ବୁଝିପାରିବା ଓ କେବଳ ତାହାରି ସାହାଯ୍ୟରେ ପୂର୍ଣ୍ଣ ସଂଖ୍ୟାଗୁଡିକର କିଛି ଚରିତ୍ରିକ ବିଶେଷତ୍ୱକୁ ଚିହ୍ନି ପାରିବା ବା ପ୍ରମାଣ କରିପାରିବା । ଏଥିଲାଗି ଅନ୍ୟକୌଣସି ସ୍ତରର ଗାଣିତିକ ଜ୍ଞାନ ଆବଶ୍ୟକ ହେବ ନାହିଁ । ମନେ ପକାନ୍ତୁ ଯେ ଏହିଭଳି ଭାବରେ ଆମେ ପୂର୍ଣ୍ଣ ସଂଖ୍ୟାଗୁଡିକର ଗୁଣଗୁଡିକ ଆଧାରରେ ହିଁ ୟୁକ୍ଲିଡଙ୍କ ଉପପାଦ୍ୟ ପ୍ରମାଣ କରିବାରେ ସଫଳ ହୋଇଥିଲେ । କିନ୍ତୁ ପୂର୍ଣ୍ଣସଂଖ୍ୟା ଗୁଡିକୁ ନେଇ ଆହୁରି ଅନେକ ଉପପାଦ୍ୟ ଅଛନ୍ତି ଯାହାକୁ ପ୍ରମାଣ କରିବାତ ଦୂରର କଥା ଠିକ୍ ଭାବେ ବୁଝିବା ପାଇଁ ମଧ୍ୟ ଆହୁରି ଗଭୀର ସ୍ତରର ଗାଣିତିକ ଜ୍ଞାନ ନିତାନ୍ତ ଜରୁରୀ ।

ମୌଳିକ ସଂଖ୍ୟାତତ୍ତ୍ୱରେ ଏଭଳି ଉଦାହରଣ ପାଇବା ସହଜ । ୟୁକ୍ଲିଡଙ୍କ ଉପପାଦ୍ୟ ଖୁବ୍ ଗୁରୁତ୍ୱପୂର୍ଣ୍ଣ ହେଲେ ମଧ୍ୟ ସେତେ ଗଭୀର ନୁହେଁ; ଆମେ କେବଳ ବିଭାଜ୍ୟତା ଭିତ୍ତିରେ ଅସୀମ ସଂଖ୍ୟକ ମୌଳିକ ସଂଖ୍ୟା ଅଛନ୍ତି ବୋଲି ସିନା ପ୍ରମାଣ କରିଦେଇପାରିବା, କିନ୍ତୁ $୧୦^{୮୦}$ ବା $୧୦^{୧୦}$ (ସମଗ୍ର ବିଶ୍ୱରେ $୧୦^{୮୦}$ଟି ପ୍ରୋଟନେ

ଅଛନ୍ତି ବୋଲି ଧରାଯାଉଛି । ପରିଚ୍ଛେଦ(୧୪)ରେ କୁହାଯାଇଥିଲା ଯେ ୧ରୁ ୧,୦୦୦,୦୦୦,୦୦୦ ମଧ୍ୟରେ ୫୦, ୮୪୭, ୪୭୮ ଟି ମୌଳିକ ସଂଖ୍ୟା ଅଛନ୍ତି । ମୌଳିକ ସଂଖ୍ୟା ନିର୍ଦ୍ଧାରଣରେ ସେତିକି ହିଁ ଆମ ଜ୍ଞାନର ସୀମା) ଭଳି ଗୋଟିଏ ଖୁବ୍ ବଡ଼ ସଂଖ୍ୟା N ମଧ୍ୟରେ କେତୋଟି ମୌଳିକ ସଂଖ୍ୟା ଅଛନ୍ତି ପ୍ରଶ୍ନର ଉତ୍ତର ଖୋଜିବା ଆଉ ଏକ ଅଲଗା କଥା । ଆଶ୍ଚର୍ଯ୍ୟର କଥା ଯେ ଆମେ ଏପ୍ରଶ୍ନର ସମ୍ପୂର୍ଣ୍ଣ ସଠିକ ଉତ୍ତର ମଧ ଦେଇ ପାରିବୁ କିନ୍ତୁ ସେଥିପାଇଁ ଆମକୁ ପୂର୍ଣ୍ଣସଂଖ୍ୟାଗୁଡ଼ିକୁ ଛାଡି ଅନ୍ୟ ଏକ ଗଭୀର ସ୍ତରକୁ ଯିବାକୁ ହେବ ଓ ଆଧୁନିକ ଫଳନ-ତତ୍ତ୍ୱ ଭଳି ଶକ୍ତିଶାଳୀ ଅସ୍ତ୍ର ପ୍ରୟୋଗ କରିବାକୁ ପଡିବ । ତେଣୁ ଯେଉଁ ଉପପାଦ୍ୟଟି ଆମକୁ ପ୍ରଶ୍ନଟିର ଉତ୍ତର ପାଇବାରେ ସାହାଯ୍ୟ କରେ (ମୌଳିକ ସଂଖ୍ୟା ଉପପାଦ୍ୟ ଭାବରେ ଜଣା) ସେହିଟି ୟୁକ୍ଲିଡଙ୍କ ଉପପାଦ୍ୟ । ଏହି ଉପପାଦ୍ୟଟି ପିଥାଗୋରାସଙ୍କ ଉପପାଦ୍ୟ ତୁଳନାରେ ବେଶ୍ ଗଭୀର । ମୁଁ ଏହିଭଳି ଏକାଧିକ ଉଦାହରଣ ଦେଇପାରେ । କିନ୍ତୁ "ଗଭୀରତା" କଥାଟା ତାକୁ ଚିହ୍ନିପାରୁଥିବା ଗଣିତଜ୍ଞ ପାଇଁ ମଧ ଅସ୍ପଷ୍ଟତାରେ ଭରା ତେଣୁ ଏଠାରେ ସେ ବିଷୟରେ ଅଧିକ କିଛି କହି ଇତର ପାଠକଙ୍କୁ କଥାଟା ବୁଝିବାରେ ସାହାଯ୍ୟ କରିପାରିବି ବୋଲି ଭାବିବା ବୃଥା ।

(୧୮)

ପରିଚ୍ଛେଦ (୧୧)ରେ "ପ୍ରକୃତ ଗଣିତ" ଓ ଚେସ୍ ମଧ୍ୟରେ ତୁଳନା କରିବା ପରିପ୍ରେକ୍ଷୀରେ ମୁଁ ଯେଉଁସବୁ କଥା ଉତ୍ଥାପନ କରିଥିଲି ସେଥିମଧ୍ୟରୁ ଆଉ ଗୋଟିଏ କଥା ଉପରେ ଅଧିକ କିଛି ଆଲୋଚନା ବାକି ରହିଛି । ଆମେ ବର୍ତ୍ତମାନ ଦ୍ୱିନାଦ୍ୱିଧାରେ ଧରି ନେଇ ପାରିବା ଯେ ସାରକଥା, ଗାମ୍ଭୀର୍ଯ୍ୟ ଓ ମହତ୍ତ୍ୱାଦି ଦୃଷ୍ଟିକୋଣରୁ ପ୍ରକୃଷ୍ଟ ଗାଣିତିକ ଉପପାଦ୍ୟର ଶ୍ରେଷ୍ଠତ୍ୱ ବହୁ ଶୀର୍ଷରେ । ଉଚ୍ଚ ଶ୍ରେଣୀୟ ପ୍ରଶିକ୍ଷଣପ୍ରାପ୍ତ ମେଧାବାନ ମସ୍ତିଷ୍କକୁ ଗାଣିତିକ ଉପପାଦ୍ୟର ଅତୁଳନୀୟ ସୌନ୍ଦର୍ଯ୍ୟ ମଧ ଜଳ ଜଳ ହୋଇ ଦେଖାଯିବ । କିନ୍ତୁ ଏହି ସୌନ୍ଦର୍ଯ୍ୟର ଏକ ସଂଜ୍ଞା ବା ସ୍ଥାନ ନିରୂପଣ କରିବା ଅତ୍ୟନ୍ତ ଦୁରୁହ ବ୍ୟାପାର । ଚେସ୍ "ପ୍ରହେଳିକା"ର ମୁଖ୍ୟ ଦୁର୍ବଳତା ତାହାର "ତୁଚ୍ଛତା" । ଅପେକ୍ଷାକୃତ ସୁଦ୍ଧ ସୌନ୍ଦର୍ଯ୍ୟବୋଧଭିତ୍ତିକ ଆକଳନ ବିନା ଏହି ବୈଷମ୍ୟ କେବଳ ଯେ ଅସ୍ପଷ୍ଟ ହୋଇଯାଏ ନୁହେଁ, ଆକଳନଟିକୁ ମଧ ଅବ୍ୟବସ୍ଥିତ କରିଦିଏ । ପ୍ରଶ୍ନ ହୋଇପାରେ ଯେ ୟୁକ୍ଲିଡ ଓ ପିଥାଗୋରାସଙ୍କ ଉପପାଦ୍ୟ ଗୁଡିକ ମଧ୍ୟରେ କି ପ୍ରକାର "ଶୁଦ୍ଧ ସୌନ୍ଦର୍ଯ୍ୟବୋଧ ଭିତ୍ତିକ" ଗୁଣାବଳୀର ପାର୍ଥକ୍ୟ ଦେଖାଯାଏ ? ମୁଁ

ଏହି ବିଷୟରେ କେତୋଟି ଅସଂଲଗ୍ନ ଉକ୍ତି ଉପସ୍ଥାପନ କରି ଅଧିକ କିଛି କହିବାରୁ ବିରତ ରହିବାକୁ ଶ୍ରେୟ ମଣିବି । ଉଭୟ ଉପପାଦ୍ୟ କ୍ଷେତ୍ରରେ (ଉପପାଦ୍ୟ କହିଲାବେଳେ ମୁଁ ଏଗୁଡ଼ିକର ପ୍ରମାଣକୁ ମଧ୍ୟ ଅନ୍ତର୍ଭୁକ୍ତ କରୁଛି) ମାତ୍ରାଧିକ ଅପ୍ରତ୍ୟାଶିତତା ସହ ଅପରିହାର୍ଯ୍ୟତା ତଥା ଭାବଗତ ମିତବ୍ୟୟୀତା ମଧ୍ୟ ଜଡ଼ିତ ହୋଇ ଅଛନ୍ତି । ତର୍କର ଧାରା ଅଦ୍ଭୁତ ଓ ବିସ୍ମୟକର । ଉପପାଦ୍ୟ ଦୁଇଟିର ସୁଦୂରପ୍ରଭାବୀ ଫଳାଫଳ ଅନୁପାତରେ ଏ ଗୁଡ଼ିକର ପ୍ରମାଣରେ ବ୍ୟବହୃତ ଗାଣିତିକ ଅସ୍ତ୍ର ଗୁଡ଼ିକ ପିଲାଟିଏ ବୁଝିପାରିଲା ଭଳି ସରଳ । ପ୍ରମାଣର ଧାରାରେ ବ୍ୟାପକତାର ଝିନ୍‌ଝଟ ନାହିଁ - ପ୍ରତି କ୍ଷେତ୍ରରେ ଏକମୁଖୀ ଆକ୍ରମଣ ହିଁ ଯଥେଷ୍ଟ । ଅନ୍ୟାନ୍ୟ ଅନେକ କ୍ଲିଷ୍ଟ ଉପପାଦ୍ୟ କ୍ଷେତ୍ରରେ ମଧ୍ୟ ଏହି କଥା ପ୍ରଯୁଜ୍ୟ ଯାହାକୁ ହୃଦୟଙ୍ଗମ କରିବା ପାଇଁ କିନ୍ତୁ ଉଚ୍ଚ ସ୍ତରର ଗାଣିତିକ ବ୍ୟୁତ୍ପତ୍ତିର ଆବଶ୍ୟକତା ପଡ଼ିଥାଏ । ଆମେ ଗୋଟିଏ ଉପପାଦ୍ୟର ପ୍ରମାଣରେ କେବଳ ଭିନ୍ନ ଭିନ୍ନ ବାଟ ଚାହୁଁନା । "ଉଦାହରଣ ଗଣତି"କୁ ଏକ ବୃଦ୍ଧିବୃତ୍ତିହୀନ ଗାଣିତିକ ଯୁକ୍ତି ଭାବରେ ଧରାଯାଏ । ଗୋଟିଏ ଗାଣିତିକ ପ୍ରମାଣ ଅତ୍ୟନ୍ତ ସରଳ ଓ ତାରକାପୁଞ୍ଜ ଭଳି ସ୍ପଷ୍ଟ ପ୍ରତୀୟମାନ ହେବା ଚାହି; ବିକ୍ଷିପ୍ତ ତାରକା ପୁଞ୍ଜମାନଙ୍କୁ ନେଇ ଗଠିତ ଅସ୍ପଷ୍ଟ ଛାୟାପଥ ଭଳି ନୁହେଁ ।

ଗୋଟିଏ ଚେସ୍ ଖେଳରେ ମଧ୍ୟ କିଛି ଅପ୍ରତ୍ୟାଶିତତା ଅଛି ଓ କିଛି ପରିମାଣରେ ମିତବ୍ୟୟୀତା ମଧ୍ୟ । ଚାଲ୍ ଗୁଡ଼ିକ ମଧ୍ୟ ବିସ୍ମୟୋଦ୍ଦୀପକ ହେବା ଚାହି । ପୁଣି ଚେସ୍ ଖେଳରେ ପାଲି ଉପରେ ଥିବା ସମସ୍ତ ଗୋଟି ନିଜ ନିଜ କରାମତି ଦେଖାଇଥାଆନ୍ତି । କିନ୍ତୁ ଖେଳର ସୌନ୍ଦର୍ଯ୍ୟବୋଧାତ୍ମକ ପ୍ରଭାବ କ୍ରମବର୍ଦ୍ଧନଶୀଳ ହୋଇଥାଏ । ଏହା ମଧ୍ୟ ଜରୁରୀ (ଯଦି ସମସ୍ୟାଟି ନିତାନ୍ତ ସାଧାସିଧା ଓ ଅନାକର୍ଷକ ହୋଇନଥିବ) ଯେ ପ୍ରତ୍ୟେକ ମୁଖ୍ୟଚାଲ୍‌ର ପରବର୍ତ୍ତୀ ଚାଲ ଗୁଡ଼ିକ ଅନେକ ଭାବରେ ଖେଳାଯାଇପାରିବ ଓ ପ୍ରତ୍ୟେକ ଧାରାର ପୁଣି ନିଜତ୍ୱ ଥିବ । ଯଥା "P-$B_5$ ପରେ $K_t$-R6; ଅମୁକ ପରେ ଅମୁକ ବା ଅମୁକ ପରେ ସମୁକ" - ଏହିଭଳି ଅନେକ ପ୍ରକାର ଖେଳଧାରା ନଥିଲେ ଖେଳ ଅନାକର୍ଷକ ହୋଇଯିବ ।

ଏଗୁଡ଼ିକ ପ୍ରତ୍ୟେକ ନିରୁତା ଗଣିତର କଥା ଓ ମୂଲ୍ୟବାନ କିନ୍ତୁ ଏ ସମସ୍ତ "ଉଦାହରଣ ପଞ୍ଜିକରଣ ମାଧ୍ୟମରେ ପ୍ରମାଣ" ଭଳି କଥା (ମୂଳସ୍ତରରେ ଏହି ଉଦାହରଣ ଗୁଡ଼ିକ ମଧ୍ୟରେ କୌଣସି ମହତ୍ତ୍ୱପୂର୍ଣ୍ଣ ପାର୍ଥକ୍ୟ ନାହିଁ । ଗୋଟିଏ ସମସ୍ୟାର ଅନେକ ଗୁଡ଼ିଏ ସମଗୁଣସମ୍ପନ୍ନ ଉତ୍ତରର ସୁଲଭତାକୁ ସମସ୍ୟାଟିର ଗାଣିତିକ ସଦ୍‌ଗୁଣ

ଭାବରେ ବିଚାର କରାଯାଉଛି ବୋଲି ମୋର ବିଶ୍ୱାସ) ଯାହାକୁ ଜଣେ ପ୍ରକୃତ ଗଣିତଜ୍ଞ ତୁଚ୍ଛ ବୋଲି ଭାବିଥାଏ ।

ଖୋଦ୍ ଚେସ୍ ଖେଳାଳୀଙ୍କ ମନୋଭାବ ବିଷୟରେ କହି ମୁଁ ମୋ ଯୁକ୍ତିକୁ ଦୃଢ଼ୀଭୂତ କରିପାରିବି ବୋଲି ଭାବୁଛି । ଦେଖାଯାଏ ସେ ଜଣେ ଭଲ ଚେସ୍ ଖେଳାଳୀ ମନଭିତରେ ସମସ୍ୟା ସମାଧାନର ଶୁଦ୍ଧ ଗାଣିତିକ ପ୍ରକ୍ରିୟାକୁ ଘୃଣାକରେ । ଯଦିଓ ତା ନିଜ ଭିତରେ ସେ କଳା ବେଶ ପରିମାଣରେ ମହଜୁତ ଥାଏ ଓ ସେ ତାହାକୁ ଆପତକାଳେ ବ୍ୟବହାର କରେ । ସେ ମନେ ମନେ ଭାବିଥାଏ ଯେ "ଯଦି ପ୍ରତିପକ୍ଷ ସେମିତି ସେମିତି ଗୋଟି ଚଳାଏ ତେବେ ମୁଁ ଏମିତି ଏମିତି ଚାଲ ଚଳାଇ ବାଜିମାତ୍ କରିବି ।" କିନ୍ତୁ ସତ କଥାଟି ହେଲା ଚେସ୍ ଖେଳଟି ମୂଳତଃ ମନସ୍ତାତ୍ତ୍ୱିକ; ପ୍ରଶିକ୍ଷଣ ପ୍ରାପ୍ତ ବୁଦ୍ଧିଆ ଲୋକ ସହ ଆଉ ଜଣେ ପ୍ରଶିକ୍ଷଣପ୍ରାପ୍ତ ବୁଦ୍ଧିଆ ଲୋକର ଲଢ଼େଇ । ଏହା କେବଳମାତ୍ର ଛୋଟ ଛୋଟ ଗାଣିତିକ ଉପପାଦ୍ୟ ଗୁଡିକର ସଂଗ୍ରହ ନୁହେଁ ।

(୧୯)

ମୁଁ ବର୍ତ୍ତମାନ ମୋର ଅକ୍ସଫୋର୍ଡ଼ ଭାଷଣରେ ପ୍ରଦତ୍ତ ଗଣିତର ପ୍ରତିରକ୍ଷା ବିଷୟକୁ ଫେରିଯିବାକୁ ଚାହେଁ । ଛଅ ପରିଚ୍ଛେଦରେ ସ୍ଥଗିତ ରଖିଥିବା କେତୋଟି ଗୁରୁତ୍ୱପୂର୍ଣ୍ଣ ପ୍ରସଙ୍ଗ ଉପରେ ସଯତ୍ନ ଅନୁଶୀଳନ କରିବାକୁ ଚାହେଁ । ପୂର୍ବାଲୋଚନାରୁ ଏକଥା ମଧ୍ୟ ସ୍ପଷ୍ଟ ହୋଇଯାଇଥିବ ଯେ ମୁଁ ଗଣିତକୁ କେବଳ ଏକ ସୃଜନାତ୍ମକ କଳା ଭାବରେ ଦେଖିବାକୁ ଚାହେଁ । କିନ୍ତୁ ଗଣିତର ବ୍ୟବହାରିକ ଉପଯୋଗିତା ବା ଅନାବଶ୍ୟକତା ଭଳି ଆଉ କେତେକ ପ୍ରସଙ୍ଗକୁ ମଧ୍ୟ ବିଚାରକୁ ନିଆଯିବା ଉଚିତ୍ । ଏ ବିଷୟରେ ମଧ୍ୟ ଦୃଷ୍ଟିଭଙ୍ଗୀ ସ୍ତରରେ ଅନେକ ଅସ୍ପଷ୍ଟତା ରହିଛି । ମୁଁ ମୋର ଅକ୍ସଫୋର୍ଡ଼ ଭାଷଣରେ ଯେଉଁଭଳି ଭାବରେ ଗଣିତର କୌଣସି କ୍ଷତିକାରୀ ଗୁଣନାହିଁ ବୋଲି ଧରିନେଇଥିଲି ସେ ବିଷୟରେ ମଧ୍ୟ ଆଲୋଚନା ଜରୁରୀ ।

ଗୋଟିଏ କଳା ବା ବିଜ୍ଞାନ ବିଷୟକୁ ସେତିକିବେଳେ 'ଉପକାରୀ' ବୋଲି କୁହାଯିବ ଯଦି ତାହାର କ୍ରମୋନ୍ନତି ସହିତ ଅନ୍ତତଃ ପକ୍ଷେ ସର୍ବସାଧାରଣଙ୍କ ବସ୍ତୁକୈନ୍ଦ୍ରିକ ପ୍ରଗତି ଓ ସୁଖସ୍ୱାଚ୍ଛନ୍ଦ୍ୟ ଜଡିତ ହୋଇ ରହିଥାଏ । ଅର୍ଥାତ୍ ସେହି ବିଷୟଗୁଡିକ ମଣିଷ ଜୀବନରେ ଆନନ୍ଦବର୍ଦ୍ଧନରେ ସହାୟକ ହୋଇଥାଏ । ଏଠାରେ ଅବଶ୍ୟ "ଆନନ୍ଦ" ଶବ୍ଦକୁ ମାମୁଲି ସାଧାରଣ ଅର୍ଥରେ ବ୍ୟବହାର କରାଯାଇଛି । ଏହି ଦୃଷ୍ଟିକୋଣରୁ

ଚିକିତ୍ସାଶାସ୍ତ୍ର ଓ ଶରୀରତତ୍ତ୍ୱ ଉପକାରୀ ପଦବାଚ୍ୟ କାରଣ ସେ ଗୁଡିକ ମଣିଷର ରୋଗଯନ୍ତ୍ରଣା ଲାଘବରେ ସହାୟକ ହୋଇଥାଆନ୍ତି । ଯାନ୍ତ୍ରିକବିଦ୍ୟା ମଧ୍ୟ ଉପକାରୀ କାରଣ ତାହାର ଉପଯୋଗରେ ରାସ୍ତାଘାଟ, ଘର, ପୋଲ ଇତ୍ୟାଦି ତିଆରି ମାଧ୍ୟମରେ ଜୀବନଧାରଣର ମାନରେ ଉନ୍ନତି ସାଧିତ ହୋଇଥାଏ (ଯାନ୍ତ୍ରିକବିଦ୍ୟାର ଅନେକ ଅପକାରୀ ଗୁଣ ଅଛି କିନ୍ତୁ ତାହା ବର୍ତ୍ତମାନର ଆଲୋଚ୍ୟ ନୁହେଁ) । ଏହି ଆକଳନ ଅନୁସାରେ କିଛି ଗଣିତକୁ ମଧ୍ୟ 'ଉପକାରୀ' ବୋଲି କୁହାଯାଇପାରେ । ଯନ୍ତ୍ରୀମାନେ ଗଣିତର ଜ୍ଞାନ ଓ ତାହାର ଉପଯୋଗ ବିନା କୌଣସି କାର୍ଯ୍ୟ କରିପାରିବେ ନାହିଁ । ଗଣିତ ଶରୀରତତ୍ତ୍ୱ କ୍ଷେତ୍ରରେ ମଧ୍ୟ ବ୍ୟବହୃତ ହେବା ଆରମ୍ଭ ହେଲାଣି । ତେଣୁ ଗଣିତର ଏ ପ୍ରକାର ପ୍ରତିରକ୍ଷା ସର୍ବୋତ୍ତମ ବା ସେତେ ଶକ୍ତିଶାଳୀ ନହେଲେ ମଧ୍ୟ ନିଶ୍ଚିତ ପ୍ରଣିଧାନଯୋଗ୍ୟ । ବର୍ତ୍ତମାନର ଆଲୋଚନା ବା ପରୀକ୍ଷାନିରୀକ୍ଷା ପାଇଁ ଗଣିତର ଅନ୍ୟସମସ୍ତ 'ମହତ୍ତର' ଗୁଣାବଳୀଗୁଡ଼ିକର ଅବତାରଣା ଯାହାସବୁ ଅନ୍ୟାନ୍ୟ ସୃଜନାତ୍ମକ କଳା ଗୁଡିକରେ ମଧ୍ୟ ଦେଖିବାକୁ ମିଳେ ନିଷ୍ପ୍ରୟୋଜନ । ଗଣିତ ମଧ୍ୟ କବିତା ବା ସଙ୍ଗୀତ ଭଳି "ମାନସିକ ଉତ୍ତରଣରେ ସହାୟକ ବା ସଂସ୍ଥାପକ" ଭାବେ କାର୍ଯ୍ୟ କରିପାରେ । ତଦ୍ୱାରା ଗଣିତ ଗଣିତଜ୍ଞ ବା ଅନ୍ୟଲୋକ ହୃଦୟରେ ଆନନ୍ଦର ବିକାଶ ଘଟାଇପାରେ । କିନ୍ତୁ ଏଠାରେ ସେ ପ୍ରକାର ଯୁକ୍ତି ମାଧ୍ୟମରେ ଗଣିତର ପ୍ରତିରକ୍ଷା ପାଇଁ ଅଗ୍ରସର ହେଲେ ମୋର ପୂର୍ବାଲୋଚନା ଗଡିକର ପୁନରାବୃତ୍ତି ହେବ ମାତ୍ର । ଆମେ ବର୍ତ୍ତମାନ ଗଣିତର ଦୈନନ୍ଦିନ ଜୀବନରେ "ସ୍ଥୁଳ" ଉପକାରିତା କଥା ହିଁ ଆଲୋଚନା କରିବା ।

(୨୦)

ଏସବୁ କଥା ଅତି ସାଧାରଣ ଲାଗିପାରେ କିନ୍ତୁ ସେଥିରେ ମଧ୍ୟ ଅନେକ ଭୁଲ ବୁଝାମଣା ରହିଛି । କାରଣ ସାଧାରଣତଃ "ଉପକାରୀ" ବିବେଚିତ ବିଷୟଗୁଡିକ ଅଧିକାଂଶ ଲୋକଙ୍କୁ ଅନାକର୍ଷକ ଲାଗନ୍ତି ଓ ସେଗୁଡିକୁ ପଢ଼ିବାରେ କାହାରି ଆଗ୍ରହ ନଥାଏ । ଆବଶ୍ୟକ ସଂଖ୍ୟକ ଶରୀରବିଜ୍ଞାନୀ ବା ଇଞ୍ଜିନିଅର ସମାଜ ପାଇଁ ନିହାତି ଦରକାର କିନ୍ତୁ ଶରୀରତତ୍ତ୍ୱ ବା ଇଞ୍ଜିନିଅରିଂ ପଢ଼ିବା ପାଇଁ ସାଧାରଣତଃ କାହାରି ଆଗ୍ରହ ନଥାଏ (ଯଦିଓ ବିଭିନ୍ନ ଦୃଷ୍ଟିକୋଣରରୁ ଏ ପାଠ ସବୁ ପଢ଼ିବା ସପକ୍ଷରେ ଅନେକ ଯୁକ୍ତି ଉପସ୍ଥାପନ କରାଯାଇପାରେ) । ମୋ ନିଜ କ୍ଷେତ୍ରରେ ମଧ୍ୟ ମୁଁ ଦେଖୁଛି ଯେ ବିଶୁଦ୍ଧ ଗଣିତଜ୍ଞାନ ବାହାରେ ମୋର ଯାହାକିଛି ବିଜ୍ଞାନ ସମ୍ବନ୍ଧୀୟ ଜ୍ଞାନ ଅଛି ସେସବୁ ପ୍ରାୟତଃ ମୋର କୌଣସି କାମରେ ଲାଗିନ୍ତି ନାହିଁ ।

ଏହା ଏକ ଆଶ୍ଚର୍ଯ୍ୟର କଥା ଯେ ସାଧାରଣ ଲୋକର ଜୀବନରେ ବିଜ୍ଞାନ ସମ୍ବନ୍ଧୀୟ ଜ୍ଞାନର ମୂଲ୍ୟ କିଛି ନାହିଁ କହିଲେ ଚଳେ । ବିଜ୍ଞାନର ମୂଲ୍ୟ ଓ ଏହାର ଦୈନନ୍ଦିନ ଉପଯୋଗିତା ସତେ ଯେପରି ପରସ୍ପରର ଓଲଟା ଦିଗରେ ଗତି କରିଥାଆନ୍ତି; ବିଷୟଟି ଯେତିକି ମୂଲ୍ୟବାନ ତା'ର ଉପଯୋଗିତା ସେତିକି କମ୍ । ମୌଳିକ ଗଣିତର ପାରଦର୍ଶିତା ଖୁବ୍ ଦରକାରୀ । (ଏହା ଅବଶ୍ୟ ଶୁଦ୍ଧ ଗଣିତର ଅଙ୍ଗ) । ସେହିଭଳି ଫରାସୀ ଭାଷା ବା ଜର୍ମାନ ଭାଷାର କିଛି ଜ୍ଞାନ ବା ଇତିହାସ, ଭୁଗୋଳ ବା ଅର୍ଥନୀତିର କିଛି କିଛି ଜ୍ଞାନ ଖୁବ୍ ଉପକାରୀ ସାବ୍ୟସ୍ତ ହୋଇପାରନ୍ତି । କିନ୍ତୁ ପଦାର୍ଥବିଜ୍ଞାନ, ରସାୟନ ବିଜ୍ଞାନ ବା ଶରୀରତତ୍ତ୍ୱ ଇତ୍ୟାଦିର ଜ୍ଞାନ ଆମ ସାଧାରଣ ଜୀବନରେ କୌଣସି କାମରେ ଆସନ୍ତି ନାହିଁ । ବାଷ୍ପର ଅନ୍ତର୍ଗଠନ ନଜାଣି ମଧ୍ୟ ଆମେ ଜାଣୁ ଯେ ବାଷ୍ପଟି ଜଳିବ; କାର୍‌ଟି ଖରାପ ହେଲେ ଆମେ ତାକୁ ଗରାଜକୁ ନେଉ ବା ପେଟ ଖରାପ ହେଲେ ଆମେ ଡାକ୍ତରଙ୍କ ପାଖକୁ ବା ଔଷଧ ଦୋକାନକୁ ଯାଉ ଇତ୍ୟାଦି ଇତ୍ୟାଦି । ଏସବୁ କାମରେ ଆମର ବିଜ୍ଞାନ ସମ୍ବନ୍ଧୀୟ ଜ୍ଞାନର ଆବଶ୍ୟକତା ପଡେ ନାହିଁ । ବରଂ ଆମେ ଏକ ଗତାନୁଗତିକ ଧାରାରେ ଏସବୁ କାମ କରିଥାଉ ବା ଅନ୍ୟଜଣେ ଲୋକର ବୈଷୟିକ ଜ୍ଞାନ ଉପରେ ନିର୍ଭର କରିଥାଉ ।

ଯାହାବି ହେଉ, ଏହା ଏକ ପାର୍ଶ୍ୱ କଥା; କେବଳ ଏକ ନିରସ ଆଲୋଚନାର କଥା । କେବଳ ଜଣେ ସ୍କୁଲଶିକ୍ଷକ ପାଖରେ ଏହାର କିଛି ମୂଲ୍ୟ ଥାଇପାରେ କାରଣ "କେଉଁପାଠ ପଢ଼ାଇଲେ ଭଲହେବ ?" ଭଳି ପ୍ରଶ୍ନ ନେଇ ତାଙ୍କ ପାଖକୁ ଆସୁଥିବା ପିଲାମାନଙ୍କ ବାପମା'ଙ୍କୁ ସେ ଏହି ଜ୍ଞାନର ଉପଯୋଗ କରି ହୁଏତ କିଛି ଉପଦେଶ ଦେଇପାରିବେ । ଅବଶ୍ୟ ଆମେ ଯେତେବେଳେ ଶରୀରତତ୍ତ୍ୱ ଏକ ଉପକାରୀ ବିଷୟ ବୋଲି କହୁ, ଅଧିକାଂଶ ଲୋକ ଶରୀରତତ୍ତ୍ୱ ପଢ଼ନ୍ତୁ ବୋଲି କହିବା ଆମର ଅଭିପ୍ରାୟ ନୁହେଁ । ଆମ କହିବାର ଅର୍ଥ ହେଲା ଅଳ୍ପକିଛି ଲୋକ ଶରୀରତତ୍ତ୍ୱରେ ବିଶେଷ ଜ୍ଞାନଲାଭ କଲେ ସଂଖ୍ୟାଗରିଷ୍ଠ ଲୋକଙ୍କର ସ୍ୱଚ୍ଛନ୍ଦ ଜୀବନଯାପନରେ ସହାୟକ ହେବ । ଆମ ପାଇଁ ବର୍ତ୍ତମାନ ବଡ଼ ପ୍ରଶ୍ନ ଗୁଡିକ ହେଲା ଗଣିତ କେତେଦୂର ଏହିପ୍ରକାର ଉପଯୋଗିତା ଦାବି କରିପାରିବ ? କେଉଁ ପ୍ରକାର ଗଣିତର ଦାବି ସବୁଠାରୁ ବଳିଷ୍ଠ ହେବ ? ଓ ଗଣିତଜ୍ଞମାନେ ବୁଝୁଥିବା ଅର୍ଥରେ ଗଣିତର ପ୍ରଗାଢ଼ ଅଧ୍ୟୟନ ଉପଯୋଗିତା ଦୃଷ୍ଟିକୋଣରୁ କେତେଦୂର ସମର୍ଥନଯୋଗ୍ୟ ?

ଏ ସମସ୍ତ ଆଲୋଚନାରୁ ମୁଁ କେଉଁ ଉପସଂହାର ଆଡକୁ ଯାଉଛି ଆପଣମାନେ ସମସ୍ତେ ହୁଏତ ଅନୁମାନ କରିସାରିଥିବେଣି । ତେଣୁ ମୁଁ ମୋର ଶେଷକଥାକୁ ସ୍ୱତଃସିଦ୍ଧ ଭାବି ପ୍ରଥମେ ଉପସ୍ଥାପନ କରିବି । ପରେ ସେ ବିଷୟରେ କିଛି ବିସ୍ତାରରେ କହିବି । "ମୌଳିକ" ଗଣିତର ଯେ ବହୁତ ବ୍ୟବହାରିକ ଉପଯୋଗିତା ଅଛି ଏହାକୁ କେହି ଅସ୍ୱୀକାର କରି ପାରିବେ ନାହିଁ । ପେଷାଦାର ଗଣିତଜ୍ଞମାନେ ଯେଉଁ ଅର୍ଥରେ 'ମୌଳିକ' ଶବ୍ଦ ବ୍ୟବହାର କରନ୍ତି ମୁଁ ମଧ୍ୟ ସେହି ଅର୍ଥରେ ବ୍ୟବହାର କରିଛି । ସେଥିରେ ଡିଫରେନସିଆଲ ଓ ଇଣ୍ଟିଗ୍ରାଲ କାଲକୁଲସ ଅନ୍ତର୍ଭୁକ୍ତ । ଗଣିତର ଏହି ବିଭାଗ ଗୁଡିକ ମୋଟାମୋଟି ଭାବରେ ନିରସ । ଏଗୁଡିକ ଗଣିତର ସେହି ବିଭାଗ ଯାହାକି ସୌନ୍ଦର୍ଯ୍ୟବୋଧ ଦୃଷ୍ଟିରୁ ସର୍ବନିମ୍ନ ସ୍ତରର । 'ସଚ୍ଚା' ଗଣିତଜ୍ଞମାନଙ୍କର 'ଶୁଦ୍ଧ' ଗଣିତ ଯଥା ଫର୍ମା, ଅଏଲର, ଗାଉସ୍, ଆବେଲ ଓ ରିମାଁ ପ୍ରଭୃତିଙ୍କ ଗଣିତ ସମ୍ପୂର୍ଣ୍ଣଭାବରେ "ଅଦରକାରୀ' (ଏହି ଉକ୍ତିଟି ଉଭୟ ପ୍ରୟୋଗାତ୍ମକ ଓ ଶୁଦ୍ଧ ଗଣିତ ପାଇଁ ପ୍ରଯୁଜ୍ୟ) । କୌଣସି ଜଣେ ପ୍ରକୃତ ପେଷାଦାର ଗଣିତଜ୍ଞର ଜୀବନକୁ ତା' କାମର "ବ୍ୟବହାରିକ ଉପଯୋଗିତା" ଆଧାରରେ ସମର୍ଥନ କରିହେବ ନାହିଁ ।

ମୁଁ ଏଠାରେ ଗୋଟିଏ ଭୁଲ ଧାରଣା ବିଷୟରେ ପଦେ କହିବାକୁ ଚାହୁଁଛି । କିଛି ଲୋକ କହନ୍ତି ଯେ ଶୁଦ୍ଧ ଗଣିତଜ୍ଞମାନେ ସେମାନଙ୍କ କାମ ଯେତେ ଅଦରକାରୀ ସେତେ ଉଚ୍ଚକୋଟୀର ବୋଲି ଦାବି କରିଥାଆନ୍ତି; ସେମାନଙ୍କ କାମ ଯେତେ କମ୍ ଉପଯୋଗୀ ସେମାନେ ତା'କୁ ନେଇ ସେତେ ଅଧିକ ଗର୍ବ କରନ୍ତି ବୋଲି କୁହାଯାଏ । (ମୁଁ ନିଜେ ଏହିଭଳି ଭାବେ ବୋଲି ଅଭିଯୋଗ କରାଯାଏ । ମୁଁ ଥରେ କହିଥିଲି; "ଯେଉଁ ବିଜ୍ଞାନ ସିଧାସଳଖ ମଣିଷ ମାରିବାରେ ସହାୟକ ହୁଏ ବା ସମାଜରେ ଥିବା ଅର୍ଥନୈତିକ ବୈଷମ୍ୟ ବୃଦ୍ଧି କରିବାରେ ସାହାଯ୍ୟ କରେ ତାହାହିଁ ଉପଯୋଗୀ ବିଜ୍ଞାନ ଭାବରେ ସ୍ୱୀକୃତ ହୋଇଥାଏ ।" ୧୯୧୫ ମସିହାରେ ମୁଁ ଲେଖିଥିବା ଏହି ବାକ୍ୟଟି ଏକାଧିକ ଥର ଉଦ୍ଧୃତ କରାଯାଇଛି (ମୋ ସପକ୍ଷରେ ହେଉ ବା ବିପକ୍ଷରେ) । କଥାଟି ଅବଶ୍ୟ ମୁଁ ଜାଣିଶୁଣି ଅନ୍ୟମାନଙ୍କୁ ଚମତ୍କୃତ କରିବା ଉଦ୍ଦେଶ୍ୟରେ ଲେଖିଥିଲି । ସେ ସମୟରେ ପରିସ୍ଥିତି ଦୃଷ୍ଟିରୁ କାର୍ଯ୍ୟଟି କ୍ଷମଣୀୟ ବୋଲି ଭାବୁଛି ।)

ଏପ୍ରକାର ଦୋଷାରୋପ ଗାଉସଙ୍କ କୌଣସି ଏକ ଅସତର୍କ ମୁହୂର୍ତ୍ତର ଟିପ୍ପଣୀ– "ଗଣିତ ଯଦି ବିଜ୍ଞାନର ରାଣୀ ହୁଏ ତେବେ ସଂଖ୍ୟାତତ୍ତ୍ୱ ଏହାର ଚରମ ଅଦରକାରୀ

ଗୁଣ ଯୋଗୁ ଗଣିତର ରାଣୀ ପଦବାଚ୍ୟ" – ଉପରେ ଆଧାରିତ । ମୁଁ ଅବଶ୍ୟ ଗାଉସଙ୍କ ମୂଳ ଉକ୍ତିଟି ପାଇବାରେ ସଫଳ ହୋଇପାରିନାହିଁ । ମୁଁ କିନ୍ତୁ ନିଶ୍ଚିତ ଯେ ଗାଉସଙ୍କ ଉକ୍ତିଟିକୁ (ଯଦି ପ୍ରକୃତରେ ଏପରି କିଛି ଥାଏ) କଦର୍ଥ କରାଯାଇଛି । କାରଣ କାଲି ଯଦି ସଂଖ୍ୟାତତ୍ତ୍ୱକୁ କୌଣସି ସମ୍ମାନଜନକ କାମରେ ଉପଯୋଗ କରାଯାଏ, ମଣିଷର ସୁଖଶାନ୍ତି ବୃଦ୍ଧିରେ ବା ଶରୀରତତ୍ତ୍ୱ ବା ରସାୟନ ବିଜ୍ଞାନ ଭଳି ମଣିଷର ଯନ୍ତ୍ରଣା ଲାଘବ କରିବା କାମରେ, ତେବେ ଗାଉସ୍ ହୁଅନ୍ତୁ ବା ଅନ୍ୟଗଣିତଜ୍ଞ ହୁଅନ୍ତୁ ସେମାନେ ଏତେ ଅମାନୁଷିକ ଓ ବୋକା ନୁହନ୍ତି ଯେ ଏହାର ବିରୋଧ କରିବେ ବା ଏଥିପାଇଁ ଅନୁତାପ କରିବେ । ବିଜ୍ଞାନର ଭଲ ଓ ଖରାପ ଉଭୟ ଦିଗ ଅଛି (ବିଶେଷକରି ଯୁଦ୍ଧ ସମୟରେ) । କିନ୍ତୁ ଆମକୁ ସ୍ୱୀକାର କରିବାକୁ ହେବ ଯେ ଗାଉସ୍ ଓ ଅନ୍ୟ ଗଣିତଜ୍ଞମାନଙ୍କ ଭାବିବା ଖୁବ୍ ଯୁକ୍ତିଯୁକ୍ତ । ଅନ୍ତତଃପକ୍ଷେ ସେମାନେ ଲିପ୍ତଥିବା ଗୋଟିଏ ବିଜ୍ଞାନ ମଣିଷର ନିତିଦିନିଆ ଜୀବନଠାରୁ ବହୁଦୂରରେ ରହିଥିବାରୁ ହିଁ କୋମଳ ଓ ନିର୍ମଳ ହୋଇ ରହିପାରିଛି ।

(୨୨)

ଆହୁରି ଗୋଟିଏ ଭ୍ରାନ୍ତଧାରଣା ବିଷୟରେ ମଧ୍ୟ ଆମକୁ ସତର୍କ ରହିବାକୁ ହେବ । ଅନେକ ଭାବନ୍ତି ଯେ 'ଶୁଦ୍ଧ' ଓ 'ପ୍ରୟୋଗାତ୍ମକ' ଗଣିତ ମଧ୍ୟରେ ବ୍ୟବହାର ଦୃଷ୍ଟିକୋଣରୁ ଖୁବ୍ ବେଶୀ ପାର୍ଥକ୍ୟ ରହିଛି । ଏପରି ଭାବିବା ଭୁଲ । ଦୁଇପ୍ରକାର ଗଣିତ ମଧ୍ୟରେ ତୀକ୍ଷ୍ଣ ପ୍ରଭେଦ ରହିଛି ସତ ଯାହା ମୁଁ ଏହି ମୂହୁର୍ତ୍ତରେ ବୁଝାଇବାକୁ ଚେଷ୍ଟା କରିବି କିନ୍ତୁ ସେହିଟି ବ୍ୟବହାରିକ ପାର୍ଥକ୍ୟ ସୃଷ୍ଟି କରେ ନାହିଁ ।

ତେଣୁ ପ୍ରଶ୍ନ ହୁଏ ଯେ ଶୁଦ୍ଧ ଓ ପ୍ରୟୋଗାତ୍ମକ ଗଣିତ ପରସ୍ପରଠାରୁ କିପରି ଭାବରେ ପୃଥକ୍ ? ଏ ପ୍ରଶ୍ନର ନିଶ୍ଚିତ ଉତ୍ତର ରହିଛି । ଏଥିରେ ସବୁ ଗଣିତଜ୍ଞମାନେ ଏକମତ । ମୋ ଉତ୍ତରରେ ସାମାନ୍ୟମାତ୍ର ରକ୍ଷଣଶୀଳତା ନଥିଲେ ମଧ୍ୟ ଏହା ପ୍ରାକ୍‌କଥନର ଅପେକ୍ଷା ରଖେ ।

ପୂର୍ବୋକ୍ତ ଦୁଇଟି ପରିଚ୍ଛେଦ ଦର୍ଶନର ମୃଦୁ ସ୍ୱାଦ ସମ୍ପନ୍ନ । ଦର୍ଶନ ଅବଶ୍ୟ ସେତେ ଗଭୀର ନୁହେଁ କି ମୁଖ୍ୟ ବକ୍ତବ୍ୟ ପାଇଁ ମଧ୍ୟ ଅପରିହାର୍ଯ୍ୟ ନୁହେଁ । କିନ୍ତୁ ବର୍ତ୍ତମାନ ଏପରି କେତେକ ଶବ୍ଦ ବ୍ୟବହାର କରିବାକୁ ବାଧ୍ୟ ହେବି ଯାହାକୁ ନିର୍ଦ୍ଦିଷ୍ଟ ଦାର୍ଶନିକ ଅର୍ଥରେ ମଧ୍ୟ ବ୍ୟବହାର କରାଯାଏ । ତେଣୁ ମୁଁ କେଉଁ ଅର୍ଥରେ ସେ ଗୁଡିକୁ ବ୍ୟବହାର କରୁଛି ନ ବୁଝାଇଲେ ପାଠକ ଦ୍ୱନ୍ଦ୍ୱରେ ପଡିଯିବା ସ୍ୱାଭାବିକ ।

ମୁଁ ବହୁତ ସମୟରେ 'ପ୍ରକୃତ' ବିଶେଷଣଟିକୁ ବ୍ୟବହାର କରିଛି, ସାଧାରଣ କଥାବାର୍ତ୍ତାରେ ଯେଉଁ ଅର୍ଥରେ ବ୍ୟବହାର କରାଯାଏ ସେହି ଅର୍ଥରେ । ମୁଁ "ପ୍ରକୃତ ଗଣିତ" ଓ "ସଚ୍ଚା ଗଣିତଜ୍ଞ" କଥା କହିଛି ଠିକ୍ ଯେପରି "ପ୍ରକୃତ କବିତା" ବା "ପ୍ରକୃତ କବି"ଙ୍କ କଥା କୁହାଯାଏ । ଆଗକୁ ମଧ୍ୟ ସେହି ଅର୍ଥରେ ବ୍ୟବହାର କରିବି । କିନ୍ତୁ ମୁଁ ଆଗକୁ "ବାସ୍ତବିକତା" ଶବ୍ଦ ବ୍ୟବହାର କରିବି ଦୁଇଟି ଅର୍ଥରେ ।

ପ୍ରଥମେ ମୁଁ "ଭୌତିକ ବାସ୍ତବିତକା" ଶବ୍ଦକୁ ସାଧାରଣଅର୍ଥରେ ବ୍ୟବହାର କରିବି ଯେଉଁଠି ଭୌତିକ ବାସ୍ତବିକତା କହିଲେ ମୁଁ ବସ୍ତୁ ଜଗତକୁ ବୁଝିବି; ଯେଉଁ ଦୁନିଆରେ ଦିନରାତି ହୁଏ, ଭୂମିକମ୍ପ ହୁଏ, ଗ୍ରହଣ ପରାଗ ହୁଏ; ଯେଉଁ ଦୁନିଆକୁ ଭୌତିକ ବିଜ୍ଞାନ ବୁଝିବାକୁ ଚେଷ୍ଟାକରେ ।

ଏତେବେଳଯାଏ ମୋ ଶବ୍ଦ ବ୍ୟବହାରକୁ ନେଇ କେହି ପାଠକ କୌଣସି ଅସୁବିଧାର ସମ୍ମୁଖୀନ ହୋଇଥିବେ ବୋଲି ମୁଁ ଭାବୁନାହିଁ । କିନ୍ତୁ ମୁଁ ବର୍ତ୍ତମାନ ଅଧିକ ଜଟିଳତା ଆଡକୁ ଚାଲିଛି । ମୋର ଓ ଅନ୍ୟାନ୍ୟ ଅନେକ ଗଣିତଜ୍ଞମାନଙ୍କର ମଧ ଧାରଣା ଯେ ଆଉ ଏକ ପ୍ରକାର ବାସ୍ତବିକତା ଅଛି ଯାହାକୁ ମୁଁ "ଗାଣିତିକ ବାସ୍ତବିକତା" ବୋଲି କହେ । ଏହି ଗାଣିତିକ ବାସ୍ତବିକତାର ଗୁଣଗ୍ରାମ ସମ୍ବନ୍ଧରେ ଗଣିତଜ୍ଞ ତଥା ଦାର୍ଶନିକମାନଙ୍କ ମଧ୍ୟରେ ମତୈକ୍ୟ ନାହିଁ । କେତେକଙ୍କ ମତରେ ଏହା ସମ୍ପୂର୍ଣ୍ଣ 'ମାନସିକ' ଓ ଆମର ମାନସ ସନ୍ତାନ । ଅନ୍ୟମାନେ କହନ୍ତି ଯେ ଏହିଟି ଆମ ଚିନ୍ତାଜଗତର ବାହାର ବସ୍ତୁ ଓ ଏହାର ସ୍ଥିତି ଆମ ଚିନ୍ତା ଚେତନା ଉପରେ ନିର୍ଭରଶୀଳ ନୁହେଁ । ଯଦି ଜଣେ ବ୍ୟକ୍ତି ଗାଣିତିକ ବାସ୍ତବିକତାର ବିଶ୍ୱାସଯୋଗ୍ୟ ଯୁକ୍ତିସଙ୍ଗତ ବର୍ଣ୍ଣନା ଦେଇପାରିବ ତେବେ ସେ ଅଧିଭୌତିକ ଜଗତର ଅନେକ କଠିନ ପ୍ରଶ୍ନର ସମାଧାନର ସୂତ୍ର ଦେଇପାରିବ । ଏହା ସହିତ ଯଦି ସେ ଭୌତିକ ବାସ୍ତବିକତାର ସଠିକ ସମୀକ୍ଷା ଯୋଡି ପାରିବ ତେବେ ସେ ସମସ୍ତ ପ୍ରଶ୍ନର ସମାଧାନ କରିବାରେ ସକ୍ଷମ ହେବ ।

ମୁଁ ଏହି ପ୍ରଶ୍ନ ଗୁଡିକ ଉପରେ ଆଲୋଚନା କରିବାକୁ ଚାହୁଁନାହିଁ । ଆଲୋଚନା କରିବା ପାଇଁ ଯଦିବି ମୋର ଦକ୍ଷତା ଥାଆନ୍ତା ତେବେ ମଧ ମୁଁ ଏଥିରୁ ବିରତ ରହିଥାଆନ୍ତି । କିନ୍ତୁ ମୋର ସ୍ୱତଃସିଦ୍ଧ ଧାରଣାଟି ମୁଁ ଏଠାରେ ଉଲ୍ଲେଖ କରିବି । ଏହାଦ୍ୱାରା ଛୋଟଛୋଟ ଭୁଲ ବୁଝାମଣାର ଅବକାଶ ରହିବ ନାହିଁ । ମୁଁ ଭାବେ ଯେ ଗାଣିତିକ ବାସ୍ତବିକତା ଆମ ଚିନ୍ତାଜଗତର ବାହାରେ ଅଧିଷ୍ଠିତ । ଆମ କାମ ହେଲା

ଏହାକୁ ଆବିଷ୍କାର କରିବା ବା ପର୍ଯ୍ୟବେକ୍ଷଣ କରିବା । ଯେଉଁସବୁ ଉପପାଦ୍ୟ ଆମେ ପ୍ରମାଣ କରୁ ବା ଆମର ସୃଷ୍ଟି ବୋଲି କହି ବାହାସ୍ଫୋଟମାରୁ ସେସବୁ ଆମ ପର୍ଯ୍ୟବେକ୍ଷଣର ଟିପ୍ପଣୀ ମାତ୍ର । ପ୍ଲାଟୋଙ୍କ ଠାରୁ ଆରମ୍ଭ କରି ଅନେକ ବିଖ୍ୟାତ ଦାର୍ଶନିକଙ୍କର ମଧ ଏହା ହିଁ ମତ ଯଦିଓ ସେମାନେ ବିଭିନ୍ନ ଭାବରେ ଏହାକୁ ଉପସ୍ଥାପନ କରିଛନ୍ତି । ତେଣୁ ମୁଁ ସମମତବାଦୀଙ୍କ ପାଇଁ ଯାହା ସ୍ୱାଭାବିକ ସେହି ଭାଷା ହିଁ ବ୍ୟବହାର କରିବି । ଯଦି ଜଣେ ପାଠକକୁ ଏ ଚିନ୍ତାଧାରା ଭଲ ନଲାଗେ ସେ ଭାଷା ବଦଳାଇପାରେ; କିନ୍ତୁ ତଦ୍ୱାରା ମୋର ଉପସଂହାରରେ କୌଣସି ପରିବର୍ତ୍ତନ ହେବନାହିଁ ।

(୨୩)

ଶୁଦ୍ଧ ଓ ପ୍ରୟୋଗାତ୍ମକ ଗଣିତ ମଧରେ ବୈଷମ୍ୟ ବୋଧହୁଏ ଜ୍ୟାମିତି କ୍ଷେତ୍ରରେ ହିଁ ସବୁଠୁ ଭଲ ଭାବରେ ଦେଖିହୁଏ । ଶୁଦ୍ଧ ଜ୍ୟାମିତି (ଆମର ଏ ଆଲୋଚନା ପାଇଁ ଗଣିତଜ୍ଞମାନେ ଯାହାକୁ "ବିଶ୍ଳେଷଣାତ୍ମକ" ଜ୍ୟାମିତି ବୋଲି ମାନନ୍ତି ତାକୁ ଆମେ ଶୁଦ୍ଧ ଜ୍ୟାମିତି ଭାବରେ ଗ୍ରହଣ କରିବା) ବୋଲି ଯାହା ବୁଝାଯାଏ ସେଥିରେ ଅନେକ ପ୍ରକାର ଜ୍ୟାମିତି ଅନ୍ତର୍ଭୁକ୍ତ ଯଥା ପ୍ରୋଜେକ୍ଟିଭ ଜ୍ୟାମିତି, ୟୁକ୍ଲିଡୀୟ ଜ୍ୟାମିତି, ଅଣୟୁକ୍ଲିଡୀୟ ଜ୍ୟାମିତି ଇତ୍ୟାଦି । ପ୍ରତ୍ୟେକ ପ୍ରକାର ଜ୍ୟାମିତି ଗୋଟିଏ ଗୋଟିଏ ମଡେଲ ବା ଭାବସମୂହର ଏକ ଏକ ଚିତ୍ରପଟ । ପ୍ରତ୍ୟେକଟିର ବିଚାର ସେଥିପ୍ରତି ଥିବା ଆଗ୍ରହ ଓ ତା'ର ସୌନ୍ଦର୍ଯ୍ୟ ଆଧାରରେ ହିଁ ହୋଇଥାଏ । ଏହା ଅନେକ ମସ୍ତିଷ୍କ ପ୍ରସୂତ ଏକ ଚିତ୍ରରୂପ, ଗାଣିତିକ ବାସ୍ତବିକତାର ଗୋଟିଏ ଅଞ୍ଚଳର ଏହା ଏକ ଆଂଶିକ ଅସମ୍ପୂର୍ଣ୍ଣ ଚିତ୍ର (କିନ୍ତୁ ନିଜ ପରିସର ମଧରେ ନିର୍ଭୁଲ) । କିନ୍ତୁ ଯେଉଁ କଥାଟି ଆମ ପାଇଁ ବର୍ତ୍ତମାନ ଗୁରୁତ୍ୱପୂର୍ଣ୍ଣ ସେହିଟି ହେଲା ଅନ୍ତତଃପକ୍ଷେ ଗୋଟିଏ ଜିନିଷ ଅଛି ଯାହାକୁ ଶୁଦ୍ଧ ଜ୍ୟାମିତି ଚିତ୍ରଣ କରିପାରେ ନାହିଁ । ତାହା ହେଉଛି ଭୌତିକ ଜଗତର ସ୍ଥାନ-କାଳ ଭିତ୍ତିକ ବାସ୍ତବିକତା । କଥାଟି ଅତ୍ୟନ୍ତ ସ୍ପଷ୍ଟ କାରଣ ଭୂମିକମ୍ପ ବା ଗ୍ରହଣପରାଗ ଆଦି ଗାଣିତିକ ପରିକଳ୍ପନା ନୁହଁନ୍ତି ।

କଥାଟା ସ୍ୱବିରୋଧାତ୍ମକ ଲାଗିପାରେ କିନ୍ତୁ ଜଣେ ଜ୍ୟାମିତିକାର ପାଇଁ ଏହା ସ୍ୱତଃସିଦ୍ଧ । ମୁଁ ଏଠି ଗୋଟିଏ ଉଦାହରଣ ଦେଇ କଥାଟିକୁ ଅଧିକ ପ୍ରାଞ୍ଜଳ କରିପାରିବି । ଧରାଯାଉ ମୁଁ ସାଧାରଣ ୟୁକ୍ଲିଡୀୟ ଜ୍ୟାମିତି ଭଳି ଏକ ଜ୍ୟାମିତିକ

ପଦ୍ଧତି ଉପରେ ଭାଷଣ ଦେଉଛି । ମୋ ବକ୍ତବ୍ୟକୁ ଶ୍ରୋତାମାନଙ୍କ ପାଇଁ ଅଧିକ ବୋଧଗମ୍ୟ କରିବା ଉଦ୍ଦେଶ୍ୟରେ ମୁଁ କଳାପଟା ଉପରେ ସରଳରେଖା, ବୃତ୍ତ ବା ଏଲିପ୍‌ସ ଭଳି କେତୋଟି ଚିତ୍ର ଆଙ୍କିଲି, କହିବା ବାହୁଲ୍ୟ ଯେ ଯେଉଁ ଉପପାଦ୍ୟ ପ୍ରମାଣ କରିବାକୁ ଯାଇ ମୁଁ ଏ ଚିତ୍ର ଗୁଡିକ ଆଙ୍କିଛି ତା'ର ସତ୍ୟତା ମୋ ଚିତ୍ରର ଭଲମନ୍ଦ ଉପରେ ନିର୍ଭର କରେ ନାହିଁ । ମୋ ଚିତ୍ର ଗୁଡ଼ିକର ମୂଳ ଉଦ୍ଦେଶ୍ୟ ହେଲା ମୋ ଯୁକ୍ତିଗୁଡିକୁ ଶ୍ରୋତାମାନଙ୍କୁ ବୋଧଗମ୍ୟ ହେବାରେ ସାହାଯ୍ୟ କରିବା । ଯଦି ସେତକ ଉଦ୍ଦେଶ୍ୟ ସାଧିତ ହୋଇପାରିଲା ତେବେ କୁଶଳୀ ଚିତ୍ରକର ଡାକି ମୋ ଚିତ୍ରଗୁଡିକୁ ସୁନ୍ଦର ଭାବରେ ଆଙ୍କିବାର କିଛି ଯଥାର୍ଥତା ନାହିଁ । ଚିତ୍ରଗୁଡିକର କାମ କେବଳ ବକ୍ତୃତାର ଅର୍ଥ ଶ୍ରୋତାମାନଙ୍କୁ ବୁଝାଇବାରେ ସାହାଯ୍ୟ କରିବା । ସେଗୁଡିକ ବକ୍ତୃତାର ପ୍ରକୃତ ବିଷୟବସ୍ତୁର ଅଂଶବିଶେଷ ନୁହଁନ୍ତି ।

ବର୍ତ୍ତମାନ ଆଉ ଟିକେ ଆଗକୁ ଯିବା । ମୁଁ ଯେଉଁ କକ୍ଷରେ ବକ୍ତୃତା ଦେଉଛି ସେ ଭୌତିକ ଜଗତର ଗୋଟିଏ ଅଂଶ । ତାହାର ମଧ୍ୟ ଏକ ଆକୃତି ଅଛି । ଏହି ଆକୃତିର ଅଧ୍ୟୟନ ହେଉ ବା ଭୌତିକ ବାସ୍ତବିକତାର ଅଧ୍ୟୟନ ହେଉ, ଏସବୁ ଗୋଟିଏ ଗୋଟିଏ ବିଜ୍ଞାନର ବିଭାଗ ଯାହାକୁ ଆମେ "ଭୌତିକ ଜ୍ୟାମିତି" ବୋଲି ନାଁ ଦେଇପାରୁ । ଧରାଯାଉ ବର୍ତ୍ତମାନ ବିଶାଳ ମହାକର୍ଷଣ ଶକ୍ତି ସମ୍ପନ୍ନ ବସ୍ତୁ ବା ପ୍ରବଳଶକ୍ତି ସମ୍ପନ୍ନ ବିଦ୍ୟୁତ୍ ଉତ୍ପାଦକ ଯନ୍ତ୍ରଟିକୁ କକ୍ଷ ଭିତରକୁ ନିଆଗଲା । ପଦାର୍ଥବିଜ୍ଞାନୀମାନଙ୍କ କହିବା ଅନୁସାରେ କକ୍ଷର ଜ୍ୟାମିତି ବଦଳିଯିବ । ଏହାର ଆକୃତି ନିଶ୍ଚିତ ଭାବରେ ବିକୃତ ହେବ ଯେତେ ସାମାନ୍ୟ ହେଉପଛକେ । ତାହାହେଲେ କ'ଣ ମୁଁ ଯେଉଁ ଉପପାଦ୍ୟ ପ୍ରମାଣ କରୁଥିଲି ଭୁଲ ହୋଇଯିବ । ଉପପାଦ୍ୟଟି କୌଣସି ପ୍ରକାର ପ୍ରଭାବିତ ହେବ ବୋଲି ଭାବିବା ମୁର୍ଖାମିର କଥା । ସେଭଳି ଭାବିବା ଯାହା ସେକ୍‌ସପିୟରଙ୍କ ନାଟକଟି ଲେଖାଥିବା ପୃଷ୍ଠା ଉପରେ କାଳି ଢ଼ାଳି ହୋଇଗଲେ ନାଟକଟି ବଦଳିଯିବ ବୋଲି ଭାବିବା ସେୟା । ନାଟକଟି ନାଟକଲେଖା ହୋଇଥିବା ପୃଷ୍ଠା ଠାରୁ ସମ୍ପୂର୍ଣ୍ଣ ସ୍ୱତନ୍ତ୍ର । ଠିକ୍ ସେହିପରି "ଶୁଦ୍ଧ ଜ୍ୟାମିତି" ବକ୍ତୃତାକକ୍ଷ ବା ଭୌତିକଜଗତର ଚରିତ୍ରିକ ବିଶେଷତ୍ୱ ଠାରୁ ସମ୍ପୂର୍ଣ୍ଣ ସ୍ୱାଧୀନ ।

ଏହାହିଁ ଶୁଦ୍ଧ ଗଣିତଜ୍ଞମାନଙ୍କ ଦୃଷ୍ଟିକୋଣ । ପ୍ରୟୋଗାତ୍ମକ ଗଣିତଜ୍ଞ ବା ଗାଣିତିକ ପଦାର୍ଥବିଜ୍ଞାନୀମାନଙ୍କର ଦୃଷ୍ଟିକୋଣ ସ୍ୱଭାବତଃ ଭିନ୍ନ କାରଣ ସେମାନଙ୍କ ମନ

ଭୌତିକଜଗତକୁ ବୁଝିବାରେ ନିବିଷ୍ଟଥାଏ ଯାହାର ନିଜର ଗୋଟିଏ ଗଠନଶୈଳୀ ବା ଆକାରପ୍ରକାର ରହିଛି । ଶୁଦ୍ଧ ଜ୍ୟାମିତି କ୍ଷେତ୍ରରେ ସେପରି ଏକ ନିଖୁଣ ଚିତ୍ର ଉପସ୍ଥାପନ କରିବା ଆମ ପକ୍ଷରେ ସମ୍ଭବ ନୁହେଁ । ତା'ସତ୍ତ୍ୱେ ଆମେ ଅନେକ କିଛି ଗୁରୁତ୍ୱପୂର୍ଣ୍ଣ କଥା କହିପାରିବା । ଆମେ କେତେବେଳେ ହୁଏତ ଭୌତିକଜଗତର ଉପାଦାନଗୁଡିକ ମଧ୍ୟରେ ଥିବା ସମ୍ପର୍କ ବିଷୟରେ ନିର୍ଭୂଲ ଧାରଣା କରିପାରିବା ତ ଆଉ କେତେବେଳେ କେବଳ ମାତ୍ର ଏକ ସ୍ଥୁଳ ଚିତ୍ରପଟ ପାଇପାରିବା । ଆମେ ଏ ସମସ୍ତ ଧାରଣାକୁ ଗୋଟିଏ ଶୁଦ୍ଧ ଜ୍ୟାମିତିକ ପଦ୍ଧତିର ବିଭିନ୍ନ ଅଂଶ ମଧ୍ୟରେ ଥିବା ନିଖୁଣ ସମ୍ପର୍କ ଗୁଡିକ ସହ ତୁଳନା ମଧ କରିପାରିବା । ଆମେ ହୁଏତ ଦୁଇଟି ମଧ୍ୟରେ କିଛି ସାମଞ୍ଜସ୍ୟ ମଧ ଲକ୍ଷ୍ୟ କରିପାରିବା । ତେବେ ଯାଇ ଶୁଦ୍ଧ ଜ୍ୟାମିତି ପଦାର୍ଥବିଜ୍ଞାନୀଙ୍କ ପାଇଁ ଆକର୍ଷଣର ପାତ୍ର ହୋଇପାରିବ । ସେହି ସାମଞ୍ଜସ୍ୟ ଅନୁପାତରେ ହିଁ ଶୁଦ୍ଧଜ୍ୟାମିତି, ଭୌତିକ ଜଗତର "ଘଟଣାବଳୀ ସହ ମେଳ ଖାଉଥିବା" ମାନଚିତ୍ରଟିଏ ଆମ ଆଗରେ ବାଢ଼ିପାରିବ । ଜ୍ୟାମିତିକାର ପଦାର୍ଥବିଜ୍ଞାନୀ ଆଗରେ ଅନେକ ଗୁଡିଏ ମାନଚିତ୍ର ଥୋଇବ ଯେଉଁଥିରୁ ସେ ଆବଶ୍ୟକତାନୁଯାୟୀ ବାଛି ପାରିବ । ଯେତେବେଳେ ଗୋଟିଏ ମାନଚିତ୍ର ଅନ୍ୟମାନଚିତ୍ର ଗୁଡିକ ତୁଳନାରେ ଘଟଣା ଗୁଡିକ ସହ ଅଧିକ ମେଳ ଖାଇବ ସେତେବେଳେ ଯେଉଁ ଜ୍ୟାମିତି ସେହି ମାନଚିତ୍ରଟିକୁ ପ୍ରଦାନ କରେ ତାହାହିଁ ପ୍ରୟୋଗାତ୍ମକ ଗଣିତପାଇଁ ସର୍ବୋତ୍କୃଷ୍ଟ ବିବେଚିତ ହେବ । ମୁଁ ଏପରି ବି କହିପାରେ ଯେ ଜଣେ ଶୁଦ୍ଧ ଗଣିତଜ୍ଞ ମଧ ଏହି ଜ୍ୟାମିତିର ପ୍ରେମରେ ପଡିଯାଇପାରେ କାରଣ ଶୁଦ୍ଧତାକୁ ଜାବୁଡି ଧରିଥିବା ଏପରି କେହି ଗଣିତଜ୍ଞ ନାହାନ୍ତି ଯେକି ଭୌତିକ ଜଗତ ବିଷୟରେ ସମ୍ପୂର୍ଣ୍ଣ ବିତସ୍ପୃହ । କିନ୍ତୁ ସେ ଯେଉଁ ମାତ୍ରାରେ ଏହି ପ୍ରଲୋଭନର ବଶବର୍ତ୍ତୀ ହେବ ସେହି ମାତ୍ରାରେ ହିଁ ସେ ଶୁଦ୍ଧ ଗଣିତଜ୍ଞ ପଦରୁ ଅପସାରିତ ହେବା ଅନିବାର୍ଯ୍ୟ ।

(୨୪)

ଆଉ ଗୋଟିଏ କଥା ଏଠି ସ୍ୱତଃ ମନକୁ ଆସୁଛି । ପଦାର୍ଥ ବିଜ୍ଞାନୀମାନଙ୍କୁ ଏହା ବିରୋଧାତ୍ମକ ଲାଗିପାରେ ଯଦିଓ ଅଠର ବର୍ଷ ପୂର୍ବର ବିରୋଧାଭାଷ ଇତିମଧ୍ୟରେ କିଛିମାତ୍ରାରେ ହ୍ରାସ ପାଇଛି । ମୁଁ ୧୯୨୨ ମସିହାରେ ବ୍ରିଟିଶ ସଂଘର 'A' ବିଭାଗକୁ ଦେଇଥିବା ବକ୍ତୃତାରେ ଯେଉଁ ଭାଷା ପ୍ରୟୋଗ କରିଥିଲି ଆଜି ମଧ ସେହି ଭାଷା ବ୍ୟବହାର କରିବି । ସେତେବେଳେ ମୋର ଶ୍ରୋତା ଥିଲେ କେବଳ ପଦାର୍ଥବିଜ୍ଞାନୀ ।

ମୁଁ ହୁଏତ ସେତେବେଳେ ଉତ୍ତେଜକ ଭାଷା ବ୍ୟବହାର କରିଥାଇପାରେ କିନ୍ତୁ ମୂଳକଥା ଉପରେ ଆଜିବି ମୁଁ ଅଟଳ ।

ମୁଁ ମୋ ବକ୍ତୃତାର ଆରମ୍ଭରେ ହିଁ କହିଥିଲି ଯେ ଜଣେ ଗଣିତଜ୍ଞ ଓ ଜଣେ ପଦାର୍ଥବିଜ୍ଞାନୀ ମଧ୍ୟରେ ଯେତିକି ପାର୍ଥକ୍ୟ ଥିବାର ସାଧାରଣତଃ ଧରି ନିଆଯାଏ ପ୍ରକୃତରେ ହୁଏତ ତାହାଠାରୁ ଖୁବ୍ କମ୍ ପାର୍ଥକ୍ୟ ଅଛି । ସବୁଠୁ ବଡ଼ ପାର୍ଥକ୍ୟ ମୋ ଦୃଷ୍ଟିରେ ହେଉଛି ଯେ ଗଣିତଜ୍ଞ ଅଧିକ ସିଧାସଳଖ ଭାବରେ ବାସ୍ତବିକତା ସହ ସମ୍ପୃକ୍ତ । କଥାଟି ବିରୋଧାତ୍ମକ ଲାଗିପାରେ କାରଣ ପଦାର୍ଥବିଜ୍ଞାନୀମାନଙ୍କ ବିଷୟବସ୍ତୁକୁ ସାଧାରଣଭାବେ "ବାସ୍ତବ" ବୋଲି ଧରାଯାଇଥାଏ । କିନ୍ତୁ ସାମାନ୍ୟ ଚିନ୍ତାକଲେ ସ୍ପଷ୍ଟ ହୋଇଯିବଯେ ସାଧାରଣଜ୍ଞାନ ଦୃଷ୍ଟିରୁ ବାସ୍ତବତା ସହ ଯେଉଁ ସବୁ ଚରିତ୍ରିକ ଗୁଣାବଳୀ ଆରୋପିତ ହୁଏ ପଦାର୍ଥବିଜ୍ଞାନୀର ବାସ୍ତବତାରେ ସେସବୁ କିଛି ଦୃଷ୍ଟିଗୋଚର ହୁଏନାହିଁ । ଗୋଟିଏ ଚୌକିକୁ ଆମେ ହୁଏତ ଘୁରିବୁଲୁଥିବା ଇଲେକଟ୍ରନ ଗୁଡ଼ିକଙ୍କ ସମଷ୍ଟି ବା ଭଗବାନଙ୍କର ଏକ କଳ୍ପନା ଭାବରେ ବର୍ଣ୍ଣନା କରିପାରିବା । ଦୁଇଟି ଯାକ ବର୍ଣ୍ଣନାରେ ହୁଏତ କିଛି କିଛି ସତ୍ୟତା ମଧ୍ୟ ଥାଇପାରେ । କିନ୍ତୁ ସାଧାରଣ ହେତୁରେ ଆମେ ଚୌକିଟିକୁ ଯେପରି ଭାବରେ ଦେଖୁ ସେଥିସହିତ ଉପରୋକ୍ତ ଦୁଇଟିଯାକ ବର୍ଣ୍ଣନାର ଆଦୌ ସମ୍ପର୍କ ନାହିଁ ।

ମୁଁ ଆଗକୁ ଯାଇ କହିଥିଲି ଯେ "ଭୌତିକ ବାସ୍ତବତା" ସମ୍ବନ୍ଧରେ ପଦାର୍ଥବିଜ୍ଞାନୀ ହୁଅନ୍ତୁ ବା ଦାର୍ଶନିକ ହୁଅନ୍ତୁ କେହିବି ଗୋଟିଏ ବିଶ୍ୱାସଯୋଗ୍ୟ ବର୍ଣ୍ଣନା ଦେଇନାହାନ୍ତି । କେହିବି କହିନାହାନ୍ତି ଯେ ପଦାର୍ଥବିଜ୍ଞାନୀ ଅନେକଗୁଡ଼ିଏ ଗୋଳମାଳିଆ ଅସ୍ପଷ୍ଟ ଘଟଣାବଳୀ ବା ଇନ୍ଦ୍ରିୟାନୁଭୂତିରୁ ଆରମ୍ଭ କରି ଭୌତିକ ବାସ୍ତବତାର ଚିତ୍ରକଳ୍ପଟିଏ କିପରି ପ୍ରସ୍ତୁତ କରେ । ତେଣୁ ଆମେ ପଦାର୍ଥବିଜ୍ଞାନର ଭିତିରି କଥା ଜାଣୁ ବୋଲି କହିପାରିବୁ ନାହିଁ । କିନ୍ତୁ ଆମର ଏ ଅଜ୍ଞାନତା ଆମକୁ ଜଣେ ପଦାର୍ଥବିଜ୍ଞାନୀ କ'ଣ କରିବାକୁ ଚେଷ୍ଟା କରୁଛି ସେ ବିଷୟରେ ସ୍ଥୂଳ ଧାରଣା ଆଣିବାରୁ ବଞ୍ଚିତ କରିପାରିବ ନାହିଁ । ପରିଷ୍କାର ଭାବରେ ଜଣାପଡ଼ୁଛି ଯେ ସେ ଅନେକଗୁଡ଼ିଏ ଅସଂହତ ପ୍ରାକୃତିକ ଘଟଣା ସମଷ୍ଟିକୁ ସୁସଂହତ ଯୋଜନା ମାଧ୍ୟମରେ ଗୋଟିଏ ଭାବଗତ ସୂତ୍ରରେ ଅନୁବନ୍ଧିତ କରିବାକୁ ଚେଷ୍ଟା କରୁଛି । କିନ୍ତୁ ଏଭଳି ଏକ ଯୋଜନା ସେ କେବଳ ଗଣିତରୁ ହିଁ ପାଇପାରିବ ।

ଅନ୍ୟପକ୍ଷରେ ଜଣେ ଗଣିତଜ୍ଞ କିନ୍ତୁ ନିଜର ଗାଣିତିକ ବାସ୍ତବତାକୁ ଧରି କାମ କରିଥିଲେ । ଦ୍ୱାବିଂଶତମ ପରିଚ୍ଛେଦରେ ମୋ କହିବା ଅନୁସାରେ ମୁଁ ଏ 'ବାସ୍ତବତା'କୁ

ଗୋଟିଏ 'ବାସ୍ତବବାଦୀ' କୋଣରୁ ହିଁ ଦେଖେ, "ଆଦର୍ଶବାଦୀ" କୋଣରୁ ନୁହେଁ । ଯାହାବି ହେଉନା କାହିଁକି, ଏହାହିଁ ମୋର ମୂଳକଥା । ଏହି ବାସ୍ତବବାଦୀ ଦୃଷ୍ଟିକୋଣ ଭୌତିକ ବାସ୍ତବତା ତୁଳନାରେ ଗାଣିତିକ ବାସ୍ତବତା କ୍ଷେତ୍ରରେ ଅଧିକ ପ୍ରଯୁଜ୍ୟ । କାରଣ ଗାଣିତିକ ବସ୍ତୁ ଗୁଡିକ ଯେପରି ଦେଖାଯାଆନ୍ତି ଅବିକଳ ସେହିପରି । ଗୋଟିଏ ଚୌକି ବା ନକ୍ଷତ୍ର ଯେପରି ଦେଖାଯାଆନ୍ତି ସେପରି ଆଦୌ ନୁହନ୍ତି । ଆମେ ଏମାନଙ୍କ ବିଷୟରେ ଯେତେ ଅଧିକ ଭାବୁ ଏମାନେ ସୃଷ୍ଟିକରୁଥିବା ଇନ୍ଦ୍ରିୟାନୁଭୂତି ଗୁଡିକ ମଧ୍ୟରେ ଏଗୁଡିକ ସେତେ ଅଧିକ ଅସ୍ପଷ୍ଟ ହୋଇହୋଇଯାଆନ୍ତି । କିନ୍ତୁ '୨' ବା '୩୧୭'ର ଇନ୍ଦ୍ରିୟାନୁଭୂତି ସହ କୌଣସି ସମ୍ପର୍କ ନାହିଁ । ଆମେ ଏଗୁଡିକୁ ଯେତେ ନିକଟରୁ ନିରୀକ୍ଷଣ କରୁ ସେମାନଙ୍କ ଗୁଣ ସେତେ ସ୍ପଷ୍ଟ ହୋଇଥାଏ । ହୁଏତ ଆଧୁନିକ ପଦାର୍ଥବିଜ୍ଞାନର କୌଣସି ଏକ ଆଦର୍ଶବାଦୀ ଦର୍ଶନ ସହିତ ସାମଞ୍ଜସ୍ୟ ଥାଇପାରେ । ମୁଁ କିନ୍ତୁ ସେଭଳି ବିଶ୍ୱାସ କରେ ନାହିଁ ଯଦିଓ ଅନେକ ବିଖ୍ୟାତ ପଦାର୍ଥବିଜ୍ଞାନୀ ତାହାହିଁ କହନ୍ତି । ଶୁଦ୍ଧ ଗଣିତ କିନ୍ତୁ ମୋ ଦୃଷ୍ଟିରେ ଏପରି ଏକ ଶିଳାଖଣ୍ଡ ଯାହା ସହିତ ସଂଘର୍ଷରେ ସମସ୍ତ ପ୍ରକାର ଆଦର୍ଶବାଦ ସତ୍ତା ହରାଇ ଥାଆନ୍ତି । ଆମେ ଭାବୁଛୁ ବୋଲି ବା ଆମ ଚିନ୍ତାଧାରା ଏପ୍ରକାର କି ସେ ପ୍ରକାର ବୋଲି ୩୧୭ ଗୋଟିଏ ମୌଳିକ ସଂଖ୍ୟା ହୋଇନାହିଁ । ଏହା ଗୋଟିଏ ମୌଳିକ ସଂଖ୍ୟା ଭାବରେ ଗଣାଯାଉଛି କାରଣ ଏହା ଗୋଟିଏ ମୌଳିକ ସଂଖ୍ୟା ଅଟେ । ଏହାହିଁ ଗାଣିତିକ ବାସ୍ତବତାର ଭିତ୍ତିଭୂମି ।

(୨୫)

ଶୁଦ୍ଧ ଓ ପ୍ରୟୋଗାତ୍ମକ ଗଣିତ ମଧ୍ୟରେ ଏହି ପାର୍ଥକ୍ୟସବୁ ନିଜେ ନିଜେ ଖୁବ୍ ଗୁରୁତ୍ୱପୂର୍ଣ୍ଣ କିନ୍ତୁ ଗଣିତର "ଉପକାରିତା" ସମ୍ପନ୍ଧରେ ଆମେ ଯେଉଁ ଆଲୋଚନା କରୁଛେ ସେଥିରେ ଏଗୁଡିକର କିଛି ଭୂମିକା ନାହିଁ । ମୁଁ (୨୧) ପରିଚ୍ଛେଦରେ ଫର୍ମା ପ୍ରଭୃତି ବିଖ୍ୟାତ ଗଣିତଜ୍ଞମାନଙ୍କ 'ଶୁଦ୍ଧ' ଗଣିତ କଥା କହିଥିଲି । ଏସବୁ ଗଣିତ ଚିରନ୍ତନ ସୌନ୍ଦର୍ଯ୍ୟର ଅଧିକାରୀ । ଠିକ୍ ଗ୍ରୀକ ଗଣିତ ପରି । ଏସବୁ ସର୍ବୋତ୍ତମ ସାହିତ୍ୟ ପରି ହଜାର ହଜାର ବର୍ଷ ପରେ ମଧ୍ୟ ଅସଂଖ୍ୟ ଲୋକଙ୍କ ମନରେ ପ୍ରଗାଢ଼ ଭାବମୟ ତୃପ୍ତି ପ୍ରଦାନ କରି ଚାଲିଛନ୍ତି । ଏମାନେ ସମସ୍ତେ ମୁଖ୍ୟତଃ ଶୁଦ୍ଧ ଗଣିତଜ୍ଞ ଥିଲେ (ଯଦିଓ ବର୍ତ୍ତମାନ ଭଳି ସେ ସମୟରେ ଶୁଦ୍ଧ ଓ ପ୍ରୟୋଗ ମଧ୍ୟରେ ପ୍ରଭେଦ ଏତେ ସ୍ପଷ୍ଟ ନଥିଲା) । ମୁଁ କିନ୍ତୁ କେବଳ ଶୁଦ୍ଧ ଗଣିତଜ୍ଞମାନଙ୍କ କଥା କହୁନାହିଁ । ମୁଁ ମାକ୍ସୱେଲ, ଆଇନଷ୍ଟାଇନ, ଏଡିଂଟନ୍ ଓ ଡିରାକ୍ ପ୍ରଭୃତିଙ୍କୁ ମଧ୍ୟ "ଶୁଦ୍ଧ" ଗଣିତଜ୍ଞ

ଭାବରେ ଗଣନା କରୁଛି । ପ୍ରୟୋଗାତ୍ମକ ଗଣିତର ସର୍ବୋଚ୍ଚ ଆଧୁନିକ ସଫଳତା ହେଲା ଆପେକ୍ଷିକ ତତ୍ତ୍ୱ ଓ କ୍ୱାଣ୍ଟମ ଗତିତତ୍ତ୍ୱ । ଅନ୍ତତଃ ବର୍ତ୍ତମାନ ପାଇଁ ଏହି ବିଷୟଗୁଡ଼ିକ ସେତିକି 'ଅଦରକାରୀ' ଯେତିକି ସଂଖ୍ୟାତତ୍ତ୍ୱ, ଉଭୟ ଶୁଦ୍ଧ ଓ ପ୍ରୟୋଗାତ୍ମକ ଗଣିତର କେବଳ ନିରସ ଓ ନିକୃଷ୍ଟ ଅଂଶ ଗୁଡ଼ିକ ହିଁ ଉପକାର ବା ଅପକାର ଭଳି କାମ କରିଥାଆନ୍ତି । ସମୟ ସହିତ ପରିସ୍ଥିତି ବଦଳି ଯାଇପାରେ । କେହି ଭାବି ନଥିଲେ ଯେ ଦିନେ ମାଟ୍ରିକ୍ସ, ଗ୍ରୁପ ବା ଅନ୍ୟାନ୍ୟ ଶୁଦ୍ଧ ଗାଣିତିକ ତତ୍ତ୍ୱ ଗୁଡ଼ିକର ବ୍ୟବହାର ଆଧୁନିକ ପଦାର୍ଥବିଜ୍ଞାନ କ୍ଷେତ୍ରରେ ଦେଖିବାକୁ ମିଳିବ । ସେହିଭଳି ଦିନେ ହୁଏତ ଆଉ କିଛି "ଉତ୍କୃଷ୍ଟମାନର" ପ୍ରୟୋଗାତ୍ମକ ଗଣିତ ଅପ୍ରତ୍ୟାଶିତ ଭାବରେ କୌଣସି "କାମରେ" ଲାଗିପାରେ । କିନ୍ତୁ ବର୍ତ୍ତମାନ ପର୍ଯ୍ୟନ୍ତ ମିଳୁଥିବା ସୂଚନାନୁଯାୟୀ ଆମ ସିଦ୍ଧାନ୍ତଟି ହେଲା ଯେ ଶୁଦ୍ଧ ଓ ପ୍ରୟୋଗାତ୍ମକ ଉଭୟ ଗଣିତର କେବଳ ଅତି ସାଧାରଣ ଓ ନିରସ ଭାଗ ହିଁ ବ୍ୟବହାରିକ ଜୀବନ ପାଇଁ ପ୍ରଯୁଜ୍ୟ ।

ଏଡିଂଟନ ଥରେ 'ଉପକାରୀ' ବିଜ୍ଞାନର ଅନାକର୍ଷଣୀୟତା ବିଷୟରେ ଏକ ଆମୋଦଦାୟକ ଉଦାହରଣ ଦେଇଥିବାର ମନେ ପଡୁଛି । ବ୍ରିଟିଶ ସଂଘ ଥରେ ଲିଡସ୍‌ଠାରେ ଏକ ଅଧିବେଶନ ଆୟୋଜନ କରିଥିଲେ । ଆୟୋଜକମାନେ ଭାବିଲେ ଯେ ହୁଏତ ସଦସ୍ୟମାନେ "ଗୁରୁ ପଶମ ଶିଳ୍ପ" କ୍ଷେତ୍ରରେ ବିଜ୍ଞାନର ପ୍ରୟୋଗ ସମ୍ବନ୍ଧରେ କିଛି ଶୁଣିବାକୁ ଆଗ୍ରହ ପ୍ରକାଶ କରିବେ । କିନ୍ତୁ ଏହି ବିଷୟ ଉପରେ ଆଧାରିତ ବକ୍ତୃତା ଓ ପ୍ରଦର୍ଶନୀ ଚରମ ବିଫଳତାର ସମ୍ମୁଖୀନ ହେଲା । ଜଣାପଡିଲା ଯେ ସଦସ୍ୟମାନେ (ଲିଡ୍‌ସର ଲୋକ ହୋଇଥାଆନ୍ତୁ ବା ନ ହୋଇଥାଆନ୍ତୁ) ଚିତ୍ତ ବିନୋଦନର ମାଧ୍ୟମ କିଛି ଖୋଜୁଥିଲେ । "ଗୁରୁ ପଶମ" ବିଷୟଟିରେ ସେଭଳି କିଛି ଉପାଦାନ ନଥିଲା । ତେଣୁ ସେ ସମ୍ବନ୍ଧୀୟ ଆଲୋଚନା ଗୁଡ଼ିକରେ ଉପସ୍ଥାନ ବହୁତ ନୈରାଶ୍ୟଜନକ ଥିଲା । ଅଥଚ ନସସ୍ ଠାରେ ପ୍ରତ୍ନତାତ୍ତ୍ୱିକ ଖନନ ବା ଆପେକ୍ଷିକ ତତ୍ତ୍ୱ ବା ମୌଳିକ ସଂଖ୍ୟା ତତ୍ତ୍ୱ ଆଧାରିତ ବକ୍ତୃତା ଗୁଡ଼ିକରେ ଆଶାତୀତ ଉପସ୍ଥାନ ଦେଖି ବକ୍ତାମାନେ ଅତ୍ୟନ୍ତ ଆନନ୍ଦିତ ହେଲେ ।

(୨୬)

ଆସନ୍ତୁ ପଚାରିବା, ଗଣିତର କେଉଁ ବିଭାଗ ଗୁଡ଼ିକ ବ୍ୟବହାର ଉପଯୋଗୀ ?

ପ୍ରଥମ ତ ସ୍କୁଲ ଗଣିତର ବହୁ ଅଂଶ ଯଥା ଅଙ୍କ, ପ୍ରାରମ୍ଭିକ ବୀଜଗଣିତ,

ପ୍ରାରମ୍ଭିକ ୟୁକ୍ଲିଡିଆନ ଜ୍ୟାମିତି, ପ୍ରାରମ୍ଭିକ ଡିଫରେନସିଆଲ ଓ ଇଣ୍ଟିଗ୍ରାଲ କାଲକୁଲସ ଇତ୍ୟାଦି ନିଶ୍ଚୟ ଉପଯୋଗୀ । ପ୍ରୋଜେକ୍ଟିଭ ଜ୍ୟାମିତି ଭଳି କିଛି ବିଷୟ ଯାହା କେବଳ "ବିଶେଷଜ୍ଞ"ମାନଙ୍କୁ ପଢ଼ାଯାଏ ତା'କୁ ବାଦ୍ ଦେବାକୁ ପଡିବ । ପ୍ରୟୋଗାତ୍ମକ ଗଣିତ ଭିତରେ ଗତିତତ୍ତ୍ୱର କିଛି ଅଂଶକୁ ମଧ୍ୟ ଗଣାଯାଇପାରେ । (ସ୍କୁଲରେ ପଢ଼ାଯାଉଥିବା ବିଦ୍ୟୁତ୍‌ଶକ୍ତି ବିଷୟକୁ ପଦାର୍ଥ ବିଜ୍ଞାନ ଅନ୍ତର୍ଭୁକ୍ତ କରିବା ଅଧିକ ସମିଚୀନ ହେବ) ।

ବିଶ୍ୱବିଦ୍ୟାଳୟସ୍ତର ଗଣିତର ବେଶ୍ କିଛି ଅଂଶ ମଧ୍ୟ ଉପକାରୀ; ବିଶେଷତଃ ସ୍କୁଲ ଗଣିତର ପରିବର୍ଦ୍ଧିତ ଓ ମାର୍ଜିତ ବିଷୟବସ୍ତୁ ଗୁଡିକ । ତା ସହିତ ଭୌତିକ ବିଜ୍ଞାନର କିଛି ଅଂଶ ଯଥା ବିଦ୍ୟୁତ୍‌ଶକ୍ତି ଓ ତରଳଗତିତତ୍ତ୍ୱ (ହାଇଡ୍ରୋଡାଇନାମିକ୍‌ସ) ଇତ୍ୟାଦିକୁ ଉପକାରୀ ଧରାଯାଇପାରେ । ଏକଥା ମଧ୍ୟ ଆମେ ମନେ ରଖିବା ଉଚିତ୍ ଯେ ପାଠ୍ୟ ବିଷୟରେ କିଛି ଅଧିକ ଜ୍ଞାନ ଆମକୁ ସବୁବେଳେ ସୁବିଧାଜନକ ସ୍ଥିତିରେ ରଖିଥାଏ । ଏପରିକି ଜଣେ ନିହାତି ବ୍ୟବହାରମୁଖୀ ଗଣିତଜ୍ଞ ମଧ୍ୟ ଗୁରୁତର ଅସାମର୍ଥ୍ୟର ସମ୍ମୁଖୀନ ହୁଏ ଯଦି ସେ କେବଳ ନ୍ୟୁନତମ ଆବଶ୍ୟକ ଜ୍ଞାନର ଅଧିକାରୀ ହୋଇଥାଏ । ସେଥିପାଇଁ ପ୍ରତ୍ୟେକ ଶିରୋନାମା ତଳେ ଅଧିକ କିଛି ଅନ୍ତର୍ଭୁକ୍ତ କରିଥିଲେ ଭଲ । କିନ୍ତୁ ଆମର ନିଶ୍ଚିତ ଉପସଂହାର ହେଲା ଯେ ଜଣେ ସୁଦକ୍ଷ ଇଞ୍ଜିନିୟର ବା ସାଧାରଣ ପଦାର୍ଥବିଜ୍ଞାନୀ ଦରକାର କରୁଥିବା ଗଣିତ ହିଁ ଉପକାରୀ ଗଣିତ । ଅର୍ଥାତ୍ ଯେଉଁ ଗଣିତର ସୌନ୍ଦର୍ଯ୍ୟଗତ ବୈଶିଷ୍ଟ୍ୟ ନାହିଁ ସେଗୁଡିକ ହିଁ ମୋଟାମୋଟି ଭାବରେ ଉପକାରୀ ଗଣିତ । ଉଦାହରଣ ସ୍ୱରୂପ ୟୁକ୍ଲିଡିଆନ ଜ୍ୟାମିତିର ନିରସ ଭାଗ ହିଁ ଉପକାରୀ । ଏହି ଅଂଶଟି ପାଇଁ ସମାନ୍ତର ସ୍ୱତଃସିଦ୍ଧତା ବା ସମାନୁପାତୀ ତତ୍ତ୍ୱ ବା ସୁଷମପଞ୍ଚଭୂଜ ଗଠନ ଇତ୍ୟାଦିର ଆବଶ୍ୟକତା ପଡେ ନାହିଁ ।

ଗୋଟିଏ କୌତୁହଳ କଥା ଏଠି ଦୃଷ୍ଟିଗୋଚର ହେଉଛି । ଯେ ଶୁଦ୍ଧ ଗଣିତ ପ୍ରୟୋଗାତ୍ମକ ଗଣିତ ତୁଳନାରେ ବେଶୀ ବ୍ୟବହାର ଉପଯୋଗୀ ! ଶୁଦ୍ଧ ଗଣିତ ଉଭୟ ପ୍ରୟୋଗ କ୍ଷେତ୍ର ତଥା ଅନ୍ତର୍ନିହିତ ସୌନ୍ଦର୍ଯ୍ୟ କ୍ଷେତ୍ରରେ ତୁଳନାତ୍ମକ ଭାବେ ଅଧିକ ସୁବିଧାଜନକ ସ୍ଥିତିରେ ରହୁଛି । କାରଣ ଶେଷକଥା ହେଲା କୌଶଳ ହିଁ ପ୍ରକୃତରେ ଉପକାରୀ ଓ ଗାଣିତିକ କୌଶଳ ମୁଖ୍ୟତଃ ଶୁଦ୍ଧ ଗଣିତ ମାଧ୍ୟମରେ ହିଁ ଶିକ୍ଷା ଦିଆଯାଏ ।

ମୁଁ ଯେ ଗାଣିତିକ-ପଦାର୍ଥବିଜ୍ଞାନକୁ ବଦନାମ କରିବାକୁ ଚେଷ୍ଟା କରୁନାହିଁ କହିବା ବାହୁଲ୍ୟ । ଏହା ଏକ ଚମତ୍କାର ବିଷୟ । ଏହା ଏପରି ଅନେକ ପ୍ରଶ୍ନ ସହ ସଂଶ୍ଳିଷ୍ଟ

ଯାହାର ସମାଧାନରେ ସର୍ବୋତ୍ତମ କଳ୍ପନାଶକ୍ତି ସମ୍ପନ୍ନ ମସ୍ତିଷ୍କ ଗୁଡିକ ମଧ୍ୟ ଦିଗହରା ହୋଇଅଛନ୍ତି । ସେସବୁ ସତ୍ତ୍ୱେ ବି କେତେକ ଦୃଷ୍ଟିରୁ ଜଣେ ପ୍ରୟୋଗବାଦୀ ଗଣିତଜ୍ଞଙ୍କର ଅବସ୍ଥା ଖୁବ୍ ଦୟନୀୟ ନୁହେଁ କି ? ଯଦି ସେ ଦରକାରୀ ହେବାକୁ ଚାହେଁ ତେବେ ତାକୁ ମାମୁଲି ସ୍ତରରେ ଗତାନୁଗତିକ ଭାବରେ କାମ କରିବାକୁ ହେବ; ଉଚ୍ଚ ସ୍ତରକୁ ଚାହାଁଲେ ବି ସେ ନିଜ କଳ୍ପନାଶକ୍ତିର ପୂର୍ଣ୍ଣ ବିନିଯୋଗ କରି ପାରିବ ନାହିଁ । ଅଜ୍ଞାନତା ଉପରେ ଦଣ୍ଡାୟମାନ ତଥାକଥିତ "ବାସ୍ତବ" ବିଶ୍ୱ ଠାରୁ କାଳ୍ପନିକ ବିଶ୍ୱ ଅନେକ ଗୁଣରେ ସୌନ୍ଦର୍ଯ୍ୟମୟ ନୁହେଁ କି ! "ଘଟୁଥିବା ଘଟଣା ଗୁଡିକୁ ବୁଝେଇବାରେ ଅକ୍ଷମ" ଭଳି ନିର୍ଦ୍ଦୟ ଅଥଚ ସ୍ୱୟଂସମ୍ପୂର୍ଣ୍ଣ ଯୁକ୍ତିବଳରେ ଜଣେ ପ୍ରୟୋଗବାଦୀ ଗଣିତଜ୍ଞଙ୍କର କଳ୍ପନା ପ୍ରସୂତ ସର୍ବୋତ୍କୃଷ୍ଟ ସୃଷ୍ଟି ଜନ୍ମ ନେବା କ୍ଷଣରେ ହିଁ ଅନେକ ସମୟରେ ପ୍ରତ୍ୟାଖାତ ହୋଇଯାଏ !!

ଶେଷକଥାଟି ତେଣୁ ଅତ୍ୟନ୍ତ ସ୍ପଷ୍ଟ । ଆଜି ହେଉ ବା କାଲି, ମଣିଷର ବସ୍ତୁକେନ୍ଦ୍ରିକ ସୁଖସ୍ୱାଚ୍ଛନ୍ଦ୍ୟ ବୃଦ୍ଧିରେ ସହାୟକ ହେଉଥିବା ଜ୍ଞାନକୁ ଯଦି ଦରକାରୀ ଜ୍ଞାନ ଭାବରେ ବିବେଚନା କରିବା ତେବେ ଉଚ୍ଚସ୍ତର ଗଣିତର ବହୁଳାଂଶ ଅଦରକାରୀ ଆଖ୍ୟା ହିଁ ନେବେ । ଏହି ପରୀକ୍ଷାରେ ଆଧୁନିକ ଜ୍ୟାମିତି ବା ଆଧୁନିକ ବୀଜଗଣିତ ବା ସଂଖ୍ୟା ତତ୍ତ୍ୱ ବା ଫଳନତତ୍ତ୍ୱ ବା ଆପେକ୍ଷିକ ତତ୍ତ୍ୱ ବା କ୍ୱାଣ୍ଟମ ତତ୍ତ୍ୱ ଇତ୍ୟାଦି ମଧ୍ୟରୁ କେହି କାହାଠାରୁ ଅଧିକ ସଫଳତା ଦାବି କରି ପାରିବେ ନାହିଁ । ଏହି ଦୃଷ୍ଟିକୋଣରୁ କୌଣସି ପ୍ରକୃତ ଗଣିତଜ୍ଞଙ୍କର ଜୀବନ ଯଥାର୍ଥ ନୁହେଁ । ଯଦି ଉପକାରିତାକୁ ପରୀକ୍ଷାର ଆଧାର ଭାବେ ନିଆଯାଏ ତେବେ ଆବେଲ, ରିମାଁ ଓ ପଏଁକାରେ ଭଳି ଗଣିତଜ୍ଞମାନେ ସେମାନଙ୍କ ଜୀବନକୁ ନଷ୍ଟ କରିଦେଲେ ବୋଲି କୁହାଯିବ । ମଣିଷ ଜୀବନର ସୁଖସ୍ୱାଚ୍ଛନ୍ଦ୍ୟ ପାଇଁ ସେମାନଙ୍କ ଅବଦାନ ନଗଣ୍ୟ; ସେମାନଙ୍କ ଥିବା ନଥିବା ଏକାକଥା ।

(୨୭)

ମୁଁ କେବଳ "ଆନନ୍ଦ" ବା "ସ୍ୱାଚ୍ଛନ୍ଦ୍ୟ" ସହିତ ଯୋଡି "ଉପକାରିତା"କୁ ଏକ ସଂକୀର୍ଣ୍ଣ ଅର୍ଥରେ ବୁଝୁଛି ବୋଲି ଅଭିଯୋଗ ହୋଇପାରେ । କିଛି ଭିନ୍ନ ରୁଚି ସମ୍ପନ୍ନ ସାମ୍ପ୍ରତିକ ଗଣିତଜ୍ଞ ଗଣିତର "ସାମାଜିକ" ପ୍ରଭାବ ଉପରେ ଯଥେଷ୍ଟ ଗୁରୁତ୍ୱ ଆରୋପ କରୁଥିବାବେଳେ ମୁଁ ତାକୁ ଅବଜ୍ଞା କରୁଥିବାର ଅଭିଯୋଗ ମଧ୍ୟ ହୋଇପାରେ । ଏଇତ ହ୍ୱାଇଟହେଡ୍ (ଯେ ଜଣେ ଗଣିତଜ୍ଞ ରହି ଆସିଛନ୍ତି) "ମଣିଷର ଜୀବନ,

ଦୈନନ୍ଦିନ ଚଳଣି ଓ ସମାଜ ସଙ୍ଗଠନ ଉପରେ ଗଣିତର ପ୍ରଭୂତ ପ୍ରଭାବ" କଥା କହିଛନ୍ତି । ହଗବେନ୍ (ଯେ ମୁଁ ଓ ମୋ' ଭଳି କିଛି ଗଣିତଜ୍ଞ ଗଣିତ କହିଲେ ଯାହାବୁଝନ୍ତି ତାକୁ ସେତିକି ବିରୋଧ କରନ୍ତି ହ୍ୱାଇଟହେଡ ଯେତିକି ସମର୍ଥନ କରନ୍ତି) କହନ୍ତି "ଗଣ୍ଡୁଣ ଓ ସଂହତିର ବ୍ୟାକରଣ କୁହାଯାଉଥିବା ଗଣିତଜ୍ଞାନ ବିନା ଆମେ ଗୋଟିଏ ସୁସଂହତ ସମାଜର କଳ୍ପନା ମଧ କରିପାରିବା ନାହିଁ ଯେଉଁଠି ସମସ୍ତଙ୍କ ହାତରେ ଅବକାଶ ଥିବ କିନ୍ତୁ ଦାରିଦ୍ର୍ୟ ନଥିବ" (ଏହି ମର୍ମରେ ଆହୁରି ଅନେକ କଥା) ।

ମୁଁ କେବେବି ବିଶ୍ୱାସ କରିପାରୁନାହିଁ ଯେ ଏଭଳି ପ୍ରଗଲ୍ଭତା ଗଣିତଜ୍ଞମାନଙ୍କୁ ଆନନ୍ଦ ଦେବ । ଉଭୟ ଲେଖକଙ୍କ କଥାରେ ଅତିଶୟୋକ୍ତି ଭରି ରହିଛି ଓ ସ୍ପଷ୍ଟ ପ୍ରଭେଦଗୁଡ଼ିକୁ ଭୁଲି ଯାଇଛନ୍ତି । ହଗ୍‌ବେନଙ୍କ କ୍ଷେତ୍ରରେ ଏପରି ହେବା ଖୁବ୍ ସ୍ୱାଭାବିକ କାରଣ ସେ ଜଣେ ଗଣିତଜ୍ଞ ନୁହଁନ୍ତି ବୋଲି ସମସ୍ତଙ୍କୁ ଜଣା । ସେ "ଗଣିତ" କହିଲେ କେବଳ ସ୍ଥୂଳ ଗଣିତକୁ ହିଁ ବୁଝନ୍ତି । ଏହି ଗଣିତର ଅନେକ ଉପଯୋଗିତା ଅଛି ବୋଲି ତ ମୁଁ ଆଗରୁ ସ୍ୱୀକାର କରିଛି । ଆମେ ଚାହିଁଲେ ଏହାକୁ "ସାମାଜିକ" ଉପକାରିତା ବୋଲି କହି ପାରିବା । ଅନେକ ଗାଣିତିକ ଆବିଷ୍କାର ବିଷୟରେ ସୁନ୍ଦର ସୁନ୍ଦର ଉଦାହରଣ ଦେଇ ହଗବେନ ନିଜ କଥାକୁ ପ୍ରଭାବଶାଳୀ ଢ଼ଙ୍ଗରେ ଉପସ୍ଥାପନ କରିଛନ୍ତି । ଏହା ତାଙ୍କ ବହିର ଏକ ପ୍ରଶଂସନୀୟ ଦିଗ । କାରଣ ଯେଉଁ ପାଠକମାନେ ଗଣିତଜ୍ଞ ନୁହଁନ୍ତି ବା କେବେ ହେବାର ନାହିଁ ସେମାନେ ଗଣିତ କହିଲେ ଯାହା ବୁଝନ୍ତି ଗଣିତ ଯେ ତାହାଠାରୁ ବହୁତ କିଛି ଅଧିକ ଏକଥାକୁ ସେ ବହିଟିରେ ଖୁବ୍ ସରଳଭାବରେ ପ୍ରତିପାଦନ କରିପାରିଛନ୍ତି । କିନ୍ତୁ "ପ୍ରକୃତ" ଗଣିତ ସମ୍ବନ୍ଧରେ ତାଙ୍କର ଧାନଧାରଣା ନାହିଁ । (ସେ ପିଥାଗୋରାସ ଉପପାଦ୍ୟ ବା ୟୁକ୍ଲିଡ ବା ଆଇନଷ୍ଟାଇନଙ୍କ ବିଷୟରେ ଯାହା କହିଛନ୍ତି ସେଥିରୁ ଏହା ସହଜରେ ଅନୁମାନ କରିହେବ) । ସେଥିପ୍ରତି ମଧ ତାଙ୍କର ଆଗ୍ରହ ବହୁତ କମ୍ (ସେତକ ଲୁଚାଇବା ପାଇଁ ମଧ ସେ ଚେଷ୍ଟା କରିନାହାନ୍ତି) । "ପ୍ରକୃତ" ଗଣିତ ତାଙ୍କ ପାଇଁ କେବଳ ହେୟଜ୍ଞାନ ଓ ଦୟାର ପାତ୍ର ।

ହ୍ୱାଇଟହେଡ୍‌ଙ୍କ କ୍ଷେତ୍ରରେ କିନ୍ତୁ ଅଜ୍ଞାନତା ବା ଅନାଗ୍ରହ ସମସ୍ୟା ନୁହେଁ । ଉତ୍ସାହାଧିକ୍ୟରେ ଭାସିଯାଇ ସେ ସୁପରିଚିତ ଥିବା ପ୍ରଭେଦଗୁଡ଼ିକୁ ଭୁଲିଯାଇଛନ୍ତି । ଯେଉଁ ଗଣିତର ମଣିଷର "ଦୈନନ୍ଦିନ ଚଳଣି" ଓ "ସମାଜ ସଙ୍ଗଠନ" ଉପରେ "ପ୍ରଭୂତ ପ୍ରଭାବ" ଥିବା କଥା ସେ କହିଛନ୍ତି ସେ ଗଣିତ ହ୍ୱାଇଟହେଡ୍‌ଙ୍କ ଗଣିତ

ନୁହେଁ, ହଗବେନଙ୍କ ଗଣିତ । ଯେଉଁ ଗଣିତକୁ "ସାଧାରଣ ଲୋକଙ୍କ ସାଧାରଣ କାମ"ରେ ଲଗାଯାଇପାରେ ତାହା ଉପେକ୍ଷଣୀୟ । ଯାହାକୁ ଅର୍ଥନୀତିଜ୍ଞ ବା ସମାଜଶାସ୍ତ୍ରୀମାନେ ବ୍ୟବହାର କରନ୍ତି ତାହାର କୌଣସି ବୌଦ୍ଧିକମାନ ନାହିଁ କହିଲେ ଚଳେ । ହ୍ୱାଇଟ୍‌ହେଡଙ୍କ ଗଣିତ ଜ୍ୟୋତିର୍ବିଜ୍ଞାନ ବା ପଦାର୍ଥବିଜ୍ଞାନକୁ ଗଭୀରଭାବରେ ପ୍ରଭାବିତ କରିପାରେ, ଉଲ୍ଲେଖନୀୟ ଭାବରେ ଦର୍ଶନ ଶାସ୍ତ୍ରକୁ ପ୍ରଭାବିତ କରିପାରେ – ଯେହେତୁ ଗୋଟିଏ କ୍ଷେତ୍ରର ଉଚ୍ଚ ବୌଦ୍ଧିକ ଚିନ୍ତା ଅନ୍ୟକ୍ଷେତ୍ରର ଉଚ୍ଚ ବୌଦ୍ଧିକ ଚିନ୍ତାକୁ ପ୍ରଭାବିତ କରିବାର କ୍ଷମତା ସବୁବେଳେ ରଖିଥାଏ । କିନ୍ତୁ ଏସବୁ ବ୍ୟତୀତ ଅନ୍ୟକ୍ଷେତ୍ରରେ ଏହାର ପ୍ରଭାବ ଅତ୍ୟନ୍ତ ନଗଣ୍ୟ । ଏହାର ତଥାକଥିତ "ପ୍ରଭୂତ ପ୍ରଭାବ" ସାଧାରଣ ଲୋକଙ୍କ ଉପରେ ପଡି ନାହିଁ; ବରଂ ଖୋଦ୍ ହ୍ୱାଇଟ୍‌ହେଡ୍‌ଙ୍କ ଭଳି ଲୋକମାନଙ୍କ ଉପରେ ହିଁ ପଡିଛି ପଡ଼ିବାର ଦେଖାଯାଇଛି ।

(୨୮)

ଗଣିତ ଦୁଇପ୍ରକାର । ଗୋଟିଏ ସଚ୍ଚା ଗଣିତଜ୍ଞଙ୍କ ପକ୍କା ଗଣିତ । ଅନ୍ୟଟିକୁ ମୁଁ "ତୁଚ୍ଛ" ଗଣିତ ବୋଲି କହେ । ତୁଚ୍ଛ ଗଣିତର ଯଥାର୍ଥତା ପ୍ରତିପାଦନ ପାଇଁ ଦିଆଯାଉଥିବା ଯୁକ୍ତି ଗୁଡିକ ହଗ୍‌ବେନ ବା ତାଙ୍କ ଘରାନାର ଲେଖକମାନଙ୍କୁ ଖୁବ୍ ଆକୃଷ୍ଟ କରେ କିନ୍ତୁ ପ୍ରକୃତ ଗଣିତର ସେଭଳି କିଛି ପ୍ରତିରକ୍ଷାର ବାଟ ନାହିଁ । କିନ୍ତୁ ଯଦି ସମ୍ଭବ ହୁଏ ଉକ୍ରୃଷ୍ଟ କଳା ଭଳି ପ୍ରକୃତ ଗଣିତର ଯଥାର୍ଥତା ପ୍ରତିପାଦନ କରିବା ନିତାନ୍ତ ଆବଶ୍ୟକ । ଏଥିରେ କିଛି ବିରୋଧାଭାଷ ବା ଅସ୍ୱାଭାବିକତା ନାହିଁ । ଏହାହିଁ ତ ଗଣିତଜ୍ଞମାନଙ୍କର ସାଧାରଣ ମତ ।

ଆମକୁ ଆଉ ଗୋଟିଏ ପ୍ରଶ୍ନର ବିଚାର କରିବାକୁ ହେବ । ଆମେ ବର୍ତ୍ତମାନ ଏହି ସିଦ୍ଧାନ୍ତରେ ପହଞ୍ଚିଛେ ଯେ ତୁଚ୍ଛ ଗଣିତ ଉପଯୋଗୀ, ପ୍ରକୃତ ଗଣିତ ନୁହେଁ; ତୁଚ୍ଛ ଗଣିତ କେତେକ ଦୃଷ୍ଟିରୁ କିଛି "ଭଲ କରିବାର" କ୍ଷମତା ରଖେ, ପ୍ରକୃତ ଗଣିତ ଯାହା କରି ପାରେ ନାହିଁ । କିନ୍ତୁ ଆମକୁ ତଥାପି ପ୍ରଶ୍ନ ପଚାରିବାକୁ ହେବ ଯେ ଦୁଇଟି ଯାକ ଗଣିତ ମଧ୍ୟରୁ କ୍ଷତି କରିବାର କ୍ଷମତା କାହାର ଅଛି ? ଶାନ୍ତି ସମୟରେ କୌଣସି ପ୍ରକାର ଗଣିତ ବି କ୍ଷତି ଘଟାଇପାରିବ ବୋଲି କହିବା ସ୍ୱବିରୋଧାତ୍ମକ ହେବ । ତେଣୁ ଆମେ କେବଳ ଯୁଦ୍ଧ ପରିସ୍ଥିତିରେ ହିଁ ଗଣିତର ଭୂମିକା ବିଷୟରେ ଆଲୋଚନା କରିବା । ପ୍ରଶ୍ନଟିର ଅନାସକ୍ତ ଆଲୋଚନା ଏକ ଦୁରୂହ ବ୍ୟାପାର । ହୁଏତ ମୁଁ ଏହାକୁ ଏଡାଇ ଯିବା ଉଚିତ ହୋଇଥାଆନ୍ତା । କିନ୍ତୁ ସାମାନ୍ୟ ଆଲୋଚନା

ଅପରିହାର୍ଯ୍ୟ । ସୌଭାଗ୍ୟବଶତଃ ଆଲୋଚନାଟି ଦୀର୍ଘ ହେବାର ଆବଶ୍ୟକତା ନାହିଁ ।

ଗୋଟିଏ ଆଶ୍ୱସ୍ତିକର ନିଷ୍ପତ୍ତିରେ ପହଞ୍ଚିବା ପ୍ରକୃତ ଗଣିତଜ୍ଞ ପକ୍ଷେ ଖୁବ୍ ସହଜ; ଯେ ପ୍ରକୃତ ଗଣିତର ଯୁଦ୍ଧ ସହିତ କୌଣସି ସମ୍ପର୍କ ନାହିଁ । ସଂଖ୍ୟାତତ୍ତ୍ୱ ବା ଆପେକ୍ଷିକ ତତ୍ତ୍ୱ ଭିତରେ ଯୁଦ୍ଧଖୋର ଲକ୍ଷ୍ୟ କେହି ଏପର୍ଯ୍ୟନ୍ତ ଖୋଜି ପାଇନାହିଁ ବା ଭବିଷ୍ୟତରେ ମଧ ପାଇବାର ସମ୍ଭାବନା ନାହିଁ । ଅନ୍ୟ ପକ୍ଷରେ ପ୍ରାୟୋଗିକ ଗଣିତର ଉତ୍କ୍ଷେପଣତତ୍ତ୍ୱ ବା ବାୟୁଗତିତତ୍ତ୍ୱ ଭଳି କେତୋଟି ବିଭାଗର ଉନ୍ନତି କେବଳ ଯୁଦ୍ଧ ଉଦ୍ଦେଶ୍ୟରେ ହିଁ ସାଧିତ ହୋଇଛି । ଏସବୁକୁ "ତୁଚ୍ଛ" ଗଣିତ କହିବା କଷ୍ଟକର ହେଲେ ମଧ, "ପ୍ରକୃତ" ଗଣିତର ଆଖ୍ୟା ମଧ ଏମାନେ ଦାବି କରି ପାରିବେ ନାହିଁ । ପ୍ରକୃତରେ ଏଗୁଡ଼ିକ ବିରକ୍ତିକର ଭାବେ ଅସୁନ୍ଦର ଓ ଅସହ୍ୟ ଭାବେ ନିରସ । ଏପରିକି ଲିଟ୍‌ଲଉଡ ମଧ ଉତ୍କ୍ଷେପଣ ବିଜ୍ଞାନକୁ ମାନ୍ୟତା ଦେବାରେ ସକ୍ଷମ ହୋଇପାରିଲେ ନାହିଁ । ଯଦି ଲିଟ୍‌ଲଉଡ ବିଫଳ ହେଲେ କିଏ ସଫଳ ହେବ ? କିନ୍ତୁ, ପ୍ରକୃତ ଗଣିତଜ୍ଞର ବିବେକ ନିର୍ମଳ; ତାର କାମ ବିରୁଦ୍ଧରେ କୌଣସି ମୂଲ୍ୟବୋଧକୁ ଠିଆ କରାଯାଇ ପାରିବ ନାହିଁ । ମୁଁ ଅକ୍ସଫୋର୍ଡରେ ଯାହା କହିଥିଲି, ଗଣିତ ଏକ "ନିରାପଦ, ନିରୀହ" ବୃତ୍ତି ।

ଯୁଦ୍ଧ କ୍ଷେତ୍ରରେ ତୁଚ୍ଛ ଗଣିତର ଏକାଧିକ ପ୍ରୟୋଗ ରହିଛି । ବନ୍ଧୁକ ତିଆରି ବିଶେଷଜ୍ଞ ବା ଉଡାଜାହାଜ ନକ୍ସା ତିଆରି କରୁଥିବା ବିଶେଷଜ୍ଞମାନେ ଗଣିତକୁ ଛାଡି କାମ କିର ପାରିବେ ନାହିଁ । ଏସବୁ ପ୍ରୟୋଗର ସାଧାରଣ ସରଳ ଫଳାଫଳ ହେଲା ଯେ ଗଣିତ ଆଧୁନିକ ଯୁଗର ବିଜ୍ଞାନଭିତ୍ତିକ "ସମ୍ପୂର୍ଣ୍ଣ"-ଯୁଦ୍ଧକୁ ସହଜ ଓ ସୁଗମ କରିଥାଏ (ଯଦିଓ ପଦାର୍ଥ ବିଜ୍ଞାନ ବା ରସାୟନ ବିଜ୍ଞାନ ଭଳି ଏହାର ପ୍ରଭାବ ଏତେ ସ୍ପଷ୍ଟ ନୁହେଁ) ।

ସେହିଭଳି ଆପାତତଃ ଦେଖାଯାଉଥିଲେ ମଧ ଏହା ସମ୍ପୂର୍ଣ୍ଣ ପରିତାପର ବିଷୟ ବୋଲି କହିହେବ ନାହିଁ । କାରଣ ଆଧୁନିକ ବିଜ୍ଞାନଭିତ୍ତିକ ଯୁଦ୍ଧକୁ ନେଇ ଦୁଇଟି ସମ୍ପୂର୍ଣ୍ଣ ପରସ୍ପର ବିରୋଧୀ ମତ ରହିଛି । ପ୍ରଥମ ଓ ସବୁଠାରୁ ସ୍ପଷ୍ଟ ମତଟି ହେଲା ଯେ ବିଜ୍ଞାନ କେବଳ ଯୁଦ୍ଧ ବିଭିଷିକାକୁ ବହୁଗୁଣିତ କରିବାରେ ସାହାଯ୍ୟ କରେ । ଯେଉଁ ଅଳ୍ପ ସଂଖ୍ୟକ ଲୋକ ଯୁଦ୍ଧରେ ବ୍ୟାପୃତ ଥାଆନ୍ତି ସେମାନଙ୍କ ଦୁଃଖଯନ୍ତ୍ରଣାକୁ ବିଜ୍ଞାନ ବଢ଼ାଇବା ସହିତ ଅନ୍ୟଶ୍ରେଣୀର ଲୋକମାନଙ୍କ ଆଡକୁ ସେସବୁର ସଂକ୍ରମଣରେ ସାହାଯ୍ୟ କରିଥାଏ । ଏହା ଏକ ସ୍ୱାଭାବିକ ରକ୍ଷଣଶୀଳ ଦୃଷ୍ଟିକୋଣ । ଏଥିସହିତ ଆଉ ଏକ ସମର୍ଥନଯୋଗ୍ୟ ଭିନ୍ନମତ ମଧ ରହିଛି ଯାହାକୁ ହାଲଡେନ୍ ଖୁବ୍ ଶକ୍ତିଶାଳୀ

ଭାବରେ କାଲିନିକସରେ (ଜେ.ବି.ଏସ୍. ହାଲଡେନ, କାଲିନିକସ : ଏ ଡିଫେନ୍‌ସ ଅଫ୍ କେମିକାଲ ୱାରଫେଆର (୧୯୨୪) ଉପସ୍ଥାପନ କରିଛନ୍ତି । ତାଙ୍କ ଯୁକ୍ତି ହେଲା ଯେ ଆଧୁନିକ ଯୁଦ୍ଧର ବିଭିଷୀକା ପ୍ରାକ୍-ବିଜ୍ଞାନ ସମୟ ତୁଳନାରେ କମ୍ । ବନ୍ଧୁକ ମୁନ ତୁଳନାରେ ବମ୍ ଗୁଡିକ ଅଧିକ ଦୟାଶୀଳ । ଲୁହବୁହା ଗ୍ୟାସ୍ ବା ଚର୍ମଦାହକ ଗ୍ୟାସ୍ ବୋଧହୁଏ ଯୁଦ୍ଧବିଜ୍ଞାନ - ପ୍ରସୁତ ସବୁଠାରୁ ସମ୍ବେଦନଶୀଳ ଅସ୍ତ୍ର । ରକ୍ଷଣଶୀଳ ମତ କେବଳ ଏକ କୋହଳ ଚିନ୍ତାପ୍ରସୂତ ଭାବପ୍ରବଣତା ବୋଲି କୁହାଯାଇପାରେ । ମୁଁ କିନ୍ତୁ ପ୍ରଶ୍ନଟିକୁ ବହୁଳ ଭାବରେ ଅପବ୍ୟବହୃତ ହୋଇଥିବା "ଭାବପ୍ରବଣତା" ଶବ୍ଦ ଆଧାରରେ ବିଚାର କରିବାକୁ ଚାହେଁ ନାହିଁ । ଶବ୍ଦଟିକୁ ନିର୍ଦ୍ଦିଷ୍ଟ ପ୍ରକାରର ଅସନ୍ତୁଳିତ ଭାବାବେଗକୁ ପ୍ରକାଶ କରିବା ପାଇଁ ନ୍ୟାୟସଙ୍ଗତ ଭାବରେ ବ୍ୟବହାର କରାଯାଇପାରେ । କିନ୍ତୁ ଅନେକ ଲୋକ ଅନ୍ୟମାନଙ୍କର ରୁଚି ସମ୍ପନ୍ନ ଅନୁଭବକୁ "ଭାବପ୍ରବଣତା"ର ଆଖ୍ୟା ଦେବାବେଳେ ନିଜ ପଶୁପ୍ରବଣତାକୁ "ବାସ୍ତବବାଦିତା" ନାମରେ ଲୁଚାଇବାକୁ ଚେଷ୍ଟା କରିଥାଆନ୍ତି ବୋଲି କୁହାଯାଇପାରେ । ଏକଥା ମଧ ଦାବି କରାଯାଇପାରେ ଯେ (ଯଦିଓ ଏହା ହାଲଡେନଙ୍କ ସନ୍ଦର୍ଭ ଅନ୍ତର୍ଭୁକ୍ତ ନୁହେଁ) ବିଜ୍ଞାନ ବିପଦର ଯେଉଁ ସମୀକରଣ ଆଣିବାର ଆଶା କରାଯାଉଛି ତାହା ପରିଶେଷରେ ହିତକର ସାବ୍ୟସ୍ତ ହୋଇପାରେ । ସେ ସମୀକରଣ ଆମକୁ ବତାଇବ ଯେ ଜଣେ ସୈନିକର ଜୀବନ ଠାରୁ ବେସାମରିକ ଲୋକଟିର ଜୀବନର ମୂଲ୍ୟ ଅଧିକ ନୁହେଁ । ପୁରୁଷର ଜୀବନ ଠାରୁ ସ୍ତ୍ରୀ ଲୋକର ଜୀବନ ଅଧିକ ମୂଲ୍ୟବାନ ନୁହେଁ ବା ଗୋଟିଏ ନିର୍ଦ୍ଦିଷ୍ଟ ଶ୍ରେଣୀର ଲୋକଙ୍କ ଉପରେ ସମ୍ମିଳିତ ନୃଶଂସ ଅତ୍ୟାଚାର ଅପେକ୍ଷା ଅନ୍ୟ ଯେ କୌଣସି ବିକଳ୍ପ ଶ୍ରେୟସ୍କର । ଅଳ୍ପରେ କହିଲେ ଛୋଟବଡ଼ ସବୁ ଯୁଦ୍ଧ ଯେତେଶୀଘ୍ର "ଅଲ୍ ଆଉଟ" ହୋଇଯିବେ ସେତେ ମଙ୍ଗଳ ।

ମୁଁ ଜାଣିନି ଏ ଦୁଇଟି ଦୃଷ୍ଟିକୋଣ ଭିତରୁ କେଉଟି ସତ୍ୟର ନିକଟତର । ଏହା ଏକ ଅତ୍ୟନ୍ତ ଜରୁରୀ ଓ ମର୍ମସ୍ପର୍ଶୀ ପ୍ରଶ୍ନ । ମୁଁ ଏଠାରେ ଏହାର ବ୍ୟାଖ୍ୟା କରିବାକୁ ଯାଉନାହିଁ । ଏହା ଏକ "ତୁଚ୍ଛ" ଗଣିତର ପ୍ରଶ୍ନ । ତେଣୁ ଏହାର ପ୍ରତିରକ୍ଷଣାତ୍ମକ ଯୁକ୍ତି ବାଢ଼ିବା ହଗବେନଙ୍କ କାମ, ମୋ'ର ନୁହେଁ । ତାଙ୍କ ଗଣିତ କିଛି ମାତ୍ରାରେ କଦର୍ଯ୍ୟାକ୍ତ ହୋଇପାରେ; ମୋ ଗଣିତର ସେପରି କିଛି ହେବାର ନାହିଁ ।

ଦେଖିବାକୁ ଗଲେ ଏହି ବିଷୟକୁ ନେଇ ଆହୁରି ଅଧିକ କିଛି କୁହାଯାଇପାରେ । କାରଣ ପ୍ରକୃତ ଗଣିତ ଯୁଦ୍ଧ ସମୟରେ ଅନ୍ତତଃପକ୍ଷେ ଗୋଟିଏ କାମରେ ଲାଗିପାରେ ।

ସାରାଜଗତ ଯେତେବେଳେ ପାଗଳ ହୋଇଯାଇଥିବ ସେତେବେଳେ ଜଣେ ଗଣିତଜ୍ଞ ପାଇଁ ଗଣିତ ହିଁ ବେଦନା ବିନାଶକାରୀ ମଲମର ଭୂମିକା ନେବ । କାରଣ ସବୁ କଳା ଓ ବିଜ୍ଞାନ ମଧ୍ୟରେ ଗଣିତ ହିଁ ସର୍ବାଧିକ ଆତ୍ମସଂଯମୀ ଓ ନିଃସଙ୍ଗ । ତେଣୁ ସବୁ ଲୋକମାନଙ୍କ ମଧ୍ୟରେ ଗଣିତଜ୍ଞ ହିଁ ଏକମାତ୍ର ଲୋକ ଯେ ଅନାୟାସରେ ଏପରି ଏକ ଆଶ୍ରୟସ୍ଥଳ ପାଇବାରେ ସକ୍ଷମ ହେବ ଯେଉଁଠି ବଟ୍ରାଣ୍ଡ ରସେଲଙ୍କ ଭାଷାରେ "ବାସ୍ତବ ଦୁନିଆର ହାହାକାରମୟ ନର୍କପୁରୀରୁ ଆମର ଅନ୍ତତଃ ଗୋଟିଏ ମହତ୍ ଉଦ୍ଦୀପନା ଆମକୁ ମୁକ୍ତ କରିବାରେ ସଫଳ ହୋଇଥିବ ।" ଏହା ଏକ ବିଡମ୍ବନା ଯେ ଏହା ସହିତ ଗୋଟିଏ ସର୍ତ୍ତ ଯୋଡିବା ଆବଶ୍ୟକ ହେଉଛି ଯଥା ସେ ଗଣିତଜ୍ଞଙ୍କୁ ବାର୍ଦ୍ଧକ୍ୟର ଆତିଶଯ୍ୟ ସ୍ପର୍ଶ କରିନଥିବ । ଗଣିତ ଗୋଟିଏ ଧ୍ୟାନ ଆଧାରିତ ଚିନ୍ତାଶ୍ରୟୀ ବିଷୟ ନୁହେଁ; ଏକ ସୃଜନାତ୍ମକ ବିଷୟ । ତେଣୁ ସୃଜନାକାଂକ୍ଷା ବା ସୃଜନଶକ୍ତି ହରାଇବା ପରେ ଗଣିତରୁ କେହି ବେଶୀ ଆନନ୍ଦ ଆହରଣ କରିପାରିବ ନାହିଁ । ଗଣିତଜ୍ଞପକ୍ଷେ ଏହି ବିପର୍ଯ୍ୟୟ ତ୍ୱରାନ୍ୱିତ ଭାବରେ ଘଟିବା ସ୍ୱାଭାବିକ । ଏହା ନିଶ୍ଚୟ ଏକ ଦୁଃଖର କଥା ଯେ ବାର୍ଦ୍ଧକ୍ୟଗ୍ରସ୍ତ ଲୋକଟି ଏ କ୍ଷେତ୍ରରେ ନିଜର ଗୁରୁତ୍ୱ ହରାଇସାରିଥାଏ । ସେମାନଙ୍କ ବିଷୟରେ ଚିନ୍ତା କରିବା ମୁର୍ଖାମୀ ହେବ ।

(୨୯)

ବର୍ତ୍ତମାନ ମୁଁ ମୋର ଉପସଂହାର ଗୁଡିକୁ ଗୁନ୍ଥି ଲେଖାଟିକୁ ଶେଷ କରିବି । ଏହି କାମ ମୋର ବ୍ୟକ୍ତିଗତ ରୁଚି ଅନୁସାରେ ହିଁ କରିବି । ମୁଁ ଆରମ୍ଭରୁ କହିଛି ଯେ ନିଜ ଅଧ୍ୟୟନର ପ୍ରତିରକ୍ଷା କରିବା ନିଜ ପ୍ରତିରକ୍ଷା ଭଳି ପ୍ରତୀୟମାନ ହେବା ନିଶ୍ଚିତ । ତେଣୁ ଗୋଟିଏ ପେଷାଦାର ଗଣିତଜ୍ଞ ଜୀବନର ଯଥାର୍ଥତା ପ୍ରତିପାଦନ କରିବା ମୂଳତଃ ମୋ ନିଜ ଜୀବନର ଯଥାର୍ଥତା ପ୍ରତିପାଦନ କଲାଭଳି ହେବାକୁ ବାଧ୍ୟ । ଫଳତଃ ଏହି ଶେଷ ପରିଚ୍ଛେଦର ସାରାଂଶ ମୋ ଆତ୍ମଜୀବନୀର ଏକ ଅଂଶ କହିଲେ ଅତ୍ୟୁକ୍ତି ହେବନାହିଁ ।

ମୁଁ ଜଣେ ଗଣିତଜ୍ଞ ହେବା ବ୍ୟତୀତ ଅନ୍ୟ କିଛି ହେବା ପାଇଁ ଇଚ୍ଛା କରିଥିବାର ମୋର ମନେ ନାହିଁ । ମୁଁ ଭାବୁଛି ଯେ କେଉଁ ବିଷୟରେ ମୋର ବିଶେଷ ଦକ୍ଷତା ଅଛି ତାହା ପିଲାଟି ଦିନରୁ ହିଁ ଖୁବ୍ ପରିଷ୍କାର ଭାବରେ ଜଣାପଡିଯାଇଥିଲା । ତେଣୁ ମୋ ଗୁରୁଜନମାନଙ୍କ ନିଷ୍ପତ୍ତିକୁ ପ୍ରଶ୍ନ କରିବା କଥା ମୋ ମନକୁ କେବେ ଆସିନାହିଁ । ବାଳକ ଅବସ୍ଥାରେ ଗଣିତକୁ ଭଲ ପାଇବା ମୋର ମନେ ନାହିଁ । ଜଣେ ଗଣିତଜ୍ଞର

ବୃତ୍ତିପ୍ରତି ମୋର ସେମିତି କିଛି ମହତ୍ ଧାରଣା ମଧ୍ୟ ନଥିଲା । ମୁଁ ଗଣିତ ବିଷୟରେ ପରୀକ୍ଷା ଓ ମେଧାଶକ୍ତି ମାଧ୍ୟମରେ ହିଁ ଭାବୁଥିଲି । ମୁଁ ଅନ୍ୟମାନଙ୍କୁ ପରାସ୍ତ କରିବାକୁ ଚାହୁଁଥିଲି ଓ ସେ କାମ ଗଣିତ ମାଧ୍ୟମରେ ସବୁଠାରୁ ନିର୍ଣ୍ଣାୟକ ଭାବରେ କରିହେବ ବୋଲି ଦେଖିପାରୁଥିଲି ।

ମତେ ପନ୍ଦର ବର୍ଷ ପାଖାପାଖି ହୋଇଥିବାବେଳେ ମୋ ଜୀବନର ଅଭିଳାଷ ଅଦ୍ଭୁତ ଭାବରେ ହଠାତ୍ ତା'ର ମୋଡ ବଦଳାଇଥିଲା । କେମ୍ବ୍ରିଜ କଲେଜ ଜୀବନ ଉପରେ ଲିଖିତ ଅନେକ ବହି ମଧ୍ୟରୁ "ଆଲାନ ସେଣ୍ଟ ଅବାଇନ"ଙ୍କ ("ଆଲାନ ସେଣ୍ଟ ଅବାଇନ" ହେଉଛନ୍ତି ମାଥ୍ୟୁ ମାର୍ଶାଲଙ୍କ ଧର୍ମପତ୍ନୀ ମିସେସ୍ ଫ୍ରାନସେସ ମାର୍ଶାଲଙ୍କ ଛଦ୍ମନାମ) ଲିଖିତ "ଏ ଫେଲୋ ଅଫ୍ ଟ୍ରିନିଟି" ନାଁରେ ଖଣ୍ଡେ ବହି ଅଛି ।

ମୋ ମତରେ ଏହି ବହିଟି ମ୍ୟାରୀ କରେଲିଙ୍କ ଅଧିକାଂଶ ବହିତୁଳନାରେ ନିମ୍ନ ମାନର । କିନ୍ତୁ ବହିଖଣ୍ଡିଏ କେବେହେଲେ ସମ୍ପୂର୍ଣ୍ଣ ଭାବରେ ଖରାପ ହୋଇପାରିବ ନାହିଁ ଯଦି ସେ ଜଣେ ଚତୁର ବୁଦ୍ଧିମାନ ପିଲାର କଳ୍ପନାଶକ୍ତି ଉଜ୍ଜୀବିତ କରିବାରେ ସକ୍ଷମ ହୁଏ । ସେ ବହିରେ ଦୁଇଟି ମୁଖ୍ୟ ଚରିତ୍ର । ପ୍ରଥମର ନାଁ ଫ୍ଲାଓ୍ବାରସ୍ । ସେ ସର୍ବଗୁଣସମ୍ପନ୍ନ । ଦ୍ୱିତୀୟ ଓ ଗୌଣ ଚରିତ୍ରର ନାଁ ବ୍ରାଉନ । ପ୍ରଥମ ତୁଳନାରେ ଖୁବ୍ ଦୁର୍ବଳ । ଫ୍ଲାଓ୍ବାରସ ଓ ବ୍ରାଉନ ବିଶ୍ୱବିଦ୍ୟାଳୟ ଜୀବନରେ ବହୁତ ବିପଦର ସମ୍ମୁଖୀନ ହୁଅନ୍ତି । କିନ୍ତୁ ସବୁଠାରୁ ଭୟଙ୍କର ବିପଦଟି ସଂଘଠିତ ହେଲା ଚେଷ୍ଟରଟନରେ (ସେମିତି ଦେଖିବାକୁ ଗଲେ ଚେଷ୍ଟରଟନର ସେମିତି କିଛି ମନୋରମ ବୈଶିଷ୍ଟ୍ୟ ନାହିଁ) ଥିବା ଦୁଇ ବେଲେଣ୍ଡନ କୁମାରୀଙ୍କ ଦ୍ୱାରା ପରିଚାଳିତ ଜୁଆ ଆଡ୍ଡାରେ । ଦୁଇଜଣଯାକ ଯୁବତୀ ଖୁବ୍ ଆକର୍ଷଣୀୟ କିନ୍ତୁ ଭୀଷଣ ଦୁଷ୍ଟ ପ୍ରକୃତିର । ଫ୍ଲାଓ୍ବାରସ୍ ଏସବୁ ବିପଦକୁ ଅତିକ୍ରମ କରି ସେକେଣ୍ଡ ରାଙ୍ଗଲର୍ ଓ ସିନିଅର କ୍ଲାସିକ ପଦପାଇ ଅନାୟାସରେ ଗବେଷଣା ବୃତ୍ତି ପାଇବାରେ ସଫଳ ହୁଏ । ବ୍ରାଉନ କିନ୍ତୁ ଖାଲରେ ପଡିଯାଏ । ବାପା ମା'ଙ୍କୁ ସର୍ବସ୍ୱାନ୍ତ କରେ । ମଦୁଆ ହୋଇଯାଏ । ଥରେ ଝଡ ବର୍ଷା ଲାଗିରହିଥିବା ଦୁଃସମୟରେ ଜୁନିଅର ଡିନ୍‌ଙ୍କ ପ୍ରାର୍ଥନା ବଳରୁ ହିଁ ସେ ମସ୍ତିଷ୍କ ବିକାର ଓ ପ୍ରଳାପଗ୍ରସ୍ତ ଅବସ୍ଥାରୁ ରକ୍ଷାପାଏ । ଗୋଟିଏ ସାଧାରଣ ଉପାଧି ପାଇବା ମଧ୍ୟ ତା' ପକ୍ଷେ କଷ୍ଟ ହୋଇଯାଏ । ଶେଷରେ ସେ ଧର୍ମପ୍ରଚାରକ ହୁଏ । ଏତେ ପ୍ରକାର ଦୁଃଖଦ ପରିସ୍ଥିତି ଭିତରେ ମଧ୍ୟ ଦୁହିଁଙ୍କ ମଧ୍ୟରେ ଥିବା ବନ୍ଧୁତ୍ୱ ଅତୁଟ ରହିଥାଏ । ଫ୍ଲାଓ୍ବାରସ ଯେଉଁଦିନ ପ୍ରଥମଥର ପାଇଁ କେମ୍ବ୍ରିଜ୍‌ର ସିନିୟର କମିନେସନ କକ୍ଷରେ

ବସି ୱାଇନ ଢ଼ୋକେ ପିଇ ଅଖରୋଟ ବାଦାମ ଗୋଟେଗୋଟେ ପାଟିରେ ପକାଉଥାଏ ସେତେବେଳେ ମଧ ସେ ଶ୍ରଦ୍ଧାର ସହ ବ୍ରାଉନ କଥା ହିଁ ଭାବୁଥାଏ ।

ଫ୍ଲାୱାରସ ଜଣେ ମର୍ଯ୍ୟାଦାସମ୍ପନ୍ନ ବ୍ୟକ୍ତି (ଅନ୍ତତଃ ଯେତେଦୂର ଯାଏ "ଆଲାନ ସେଣ୍ଟ ଅବାଇନ" ଚିତ୍ରଣ କରିଛନ୍ତି) । କିନ୍ତୁ ମୋର ଅମାର୍ଜିତ ଧୀଶକ୍ତି ମଧ ମାନିବାକୁ ପ୍ରସ୍ତୁତ ନୁହେଁ ଯେ ସେ ଜଣେ ଉଚ୍ଚସ୍ତରର ବୁଦ୍ଧିମାନ ଲୋକ । ତେଣୁ ମନକୁ ଆସିଲା ଯେ ସେ ଯାହା କରି ପାରିଲେ ମୁଁ କାହିଁକି ପାରିବି ନାହିଁ ? ବିଶେଷକରି କମ୍ବିନେସନ କକ୍ଷର ଦୃଶ୍ୟ ସବୁ ମତେ ସମ୍ପୂର୍ଣ୍ଣଭାବରେ ବିମୋହିତ କଲା । ସେହି ସମୟଠାରୁ ମୁଁ ନିଜେ ସେଭଳି ଅନୁଭୂତି ହାସଲ କରିବା ପର୍ଯ୍ୟନ୍ତ ଗଣିତ ଅର୍ଥ କେବଳ ଟ୍ରିନିଟିରେ ଗବେଷଣା ବୃତ୍ତି ପାଇବା ବୋଲି ଧରି ନେଲି ।

କେମ୍ବ୍ରିଜ ଆସିବା ପରେ ମତେ ଖୁବ୍ ଶୀଘ୍ର ଜଣାପଡିଲା ଯେ ଗବେଷଣାବୃତ୍ତି "ମୌଳିକ ନୂତନ" କାମର ଅପେକ୍ଷା ରଖେ । କିନ୍ତୁ ଏହାର ବହୁଦିନ ପରେ ଗବେଷଣା ବିଷୟରେ ମୋର ସଠିକ୍ ଧାରଣା ହେଲା । ପ୍ରତ୍ୟେକ ଭାବୀ-ଗଣିତଜ୍ଞଙ୍କ ଭଳି ମୁଁ ସ୍କୁଲରେ ଲକ୍ଷ୍ୟ କରିଥିଲି ଯେ ବହୁସମୟରେ ମୁଁ ଶିକ୍ଷକମାନଙ୍କ ଠାରୁ କମ୍ ସମୟରେ ଗଣିତ ପ୍ରଶ୍ନ ଗୁଡିକର ସମାଧାନ କରିପାରୁଥିଲି । କେମ୍ବ୍ରିଜରେ ବି ମୁଁ ସେହିଭଳି ଅନୁଭୂତି ପାଇଲି କିନ୍ତୁ ଟ୍ରାଇପସ୍ ପରୀକ୍ଷାରେ ବସିବାଯାଏ ମଧ ମୁଁ ସେସବୁ ବିଷୟରେ ସମ୍ପୂର୍ଣ୍ଣ ଅଜ୍ଞ ଥିଲି ଯାହାକୁ ନେଇ ମୋର ଅବଶିଷ୍ଟ ଜୀବନ ବିତେଇଦେଇଛି । ମୁଁ ତଥାପି ଭାବୁଥିଲି ଯେ ଗଣିତ ମୂଳତଃ ଗୋଟିଏ 'ପ୍ରତିଦ୍ୱନ୍ଦିତାମୂଳକ' ବିଷୟ । ପ୍ରଫେସର ଲଭ୍ ହିଁ ପ୍ରଥମେ ମୋର ଆଖି ଖୋଲିଦେଲେ । ସେ ମତେ କେତୋଟି କୋର୍ସ ପଢ଼ାଇଲେ । ତାଙ୍କ ଠାରୁ ହିଁ ମୁଁ ଆନାଲିସିସ୍‌ର ଗୁରୁତ୍ୱ ବିଷୟରେ ପ୍ରଥମ ଧାରଣା ପାଇଲି । ସେ ଜଣେ ମୁଖ୍ୟତଃ ପ୍ରୟୋଗବାଦୀ ଗଣିତଜ୍ଞ ଥିଲେ ସତ କିନ୍ତୁ ମୁଁ ତାଙ୍କ ଠାରୁ ଯେଉଁ ବିରାଟ ଋଣ ସ୍ୱୀକାର କରିଛି ସେହିଟି ହେଲା ଜର୍ଡାନଙ୍କ "କୁର୍ସ ଦି ଆନାଲିଜେ" ବହିଟି ପଢ଼ିବାର ଉପଦେଶ । ଯେଉଁ ଆଶ୍ଚର୍ଯ୍ୟ ଭରା ଉତ୍ସାହ ଉଦ୍ଦୀପନା ସହ ମୁଁ ସେ ଅସାଧାରଣ ବହିଟି ପଢ଼ିଛି ତାହା କେବେ ଭୁଲି ପାରିବି ନାହିଁ । ଏହି ବହିଟି ମୋ ସମୟରେ ଅସଂଖ୍ୟ ଗଣିତଜ୍ଞମାନଙ୍କ ପାଇଁ ପ୍ରଥମ ପ୍ରେରଣା ହୋଇ ରହି ଆସିଛି । ଏହି ବହିଟି ପଢ଼ି ମୁଁ ଗଣିତର ପ୍ରକୃତ ଅର୍ଥ କ'ଣ ବୁଝିଲି । ସେହି ସମୟରୁ ହିଁ ମୁଁ ଜଣେ ଶୁଦ୍ଧ ଗଣିତଜ୍ଞ ହେବା ରାସ୍ତାରେ ଆଗେଇ ଚାଲିଲି, ଗଣିତ କ୍ଷେତ୍ରରେ ସୁସ୍ଥ ଉଚ୍ଚାଭିଳାଷ ଓ ଗଭୀର ଅନୁରକ୍ତି ସହ ।

ପରବର୍ତ୍ତୀ ଦଶ ବର୍ଷରେ ମୁଁ ଅନେକ କାମ କରିଛି ସତ କିନ୍ତୁ ସେ ସବୁ ବିଶେଷ ମହତ୍ତ୍ୱପୂର୍ଣ୍ଣ ନୁହେଁ । ସେସବୁ ମଧ୍ୟରୁ କେବଳ ଚାରି ପାଞ୍ଚୋଟି କାମକୁ ମୁଁ ଆଜି ଆନନ୍ଦ ଓ ସନ୍ତୋଷର ସହ ମନେ ରଖିଛି । ମୋ ଜୀବନର ପ୍ରକୃତ ସଙ୍କଟ ସମୟ ଆସିଲା ଦଶ-ବାର ବର୍ଷ ପରେ; ୧୯୧୧ରେ ମୁଁ ଯେତେବେଳେ ଲିଟ୍‌ଲ୍‌ଉଡ୍‌ଙ୍କ ସହ ଦୀର୍ଘ ସହଯୋଗିତା ଆରମ୍ଭ କଲି ଓ ୧୯୧୩ରେ ମୁଁ ଯେତେବେଳେ ରାମାନୁଜନଙ୍କୁ ଆବିଷ୍କାର କଲି । ସେହିଦିନ ଠାରୁ ମୋର ସର୍ବୋତ୍ତମ କାମ ଗୁଡ଼ିକ ସେମାନଙ୍କ କାମ ସହ ଅନୁବନ୍ଧିତ ହୋଇରହିଛି । ସୁତରାଂ ସେମାନଙ୍କ ସାନିଧ୍ୟ ଯେ ମୋ ଜୀବନର ନିର୍ଣ୍ଣାୟକ ଘଟଣା ଏହା ନିଃସନ୍ଦେହ । ମୁଁ ଯେତେବେଳେ ଅବସାଦଗ୍ରସ୍ତ ହୋଇପଡେ ବା କିଛି ବାହାପିଆ ଲୋକମାନଙ୍କ କ୍ଳାନ୍ତିକର କଥା ଶୁଣିବାକୁ ବାଧ୍ୟ ହୁଏ ସେତେବେଳେ ମନକୁମନ କହିବସେ, "ସେ ଯାହାବି ହେଉ, ମୁଁ ଉଭୟ ଲିଟ୍‌ଲଉଡ୍ ଓ ରାମାନୁଜନଙ୍କ ଭଳି ଗଣିତଜ୍ଞଙ୍କ ସହିତ ମୋଟାମୋଟି ଭାବରେ ସମତାଳରେ ଗଣିତ ଗବେଷଣା କରିପାରିଛି । ଯାହାକି ତୁମେମାନେ ସ୍ୱପ୍ନରେ ସୁଦ୍ଧା କରିପାରି ନଥାନ୍ତ ।" ମୋର ଅସ୍ୱାଭାବିକ ବିଳମ୍ବିତ ପରିପକ୍ୱତା ପାଇଁ ମୁଁ ସେ ଦୁହିଁଙ୍କ ନିକଟରେ ଋଣୀ । ଚାଳିଶିବର୍ଷ ପରବର୍ତ୍ତୀ ସମୟ ହିଁ ମୋର ସର୍ବୋତ୍ତମ ମାନସିକ ବିକାଶର ସମୟ । ସେତେବେଳକୁ ମୁଁ ଅକ୍ସଫୋର୍ଡ଼ରେ ପ୍ରଫେସର ହୋଇସାରିଥାଏ । ତା'ପରଠାରୁ ମୁଁ କ୍ରମାନ୍ୱୟ ଅବନତିର ଶିକାର ହୋଇଚାଲିଛି ଯାହାକି ବୟସବୃଦ୍ଧିର ସାଧାରଣ ଫଳ; ବିଶେଷକରି ବୟସ୍କ ଗଣିତଜ୍ଞଙ୍କର । ଷାଠିଏ ବର୍ଷରେ ହୁଏତ ଜଣେ ଗଣିତଜ୍ଞ ଦକ୍ଷତା ପ୍ରଦର୍ଶନ କରିପାରେ କିନ୍ତୁ ତାଙ୍କ ଠାରୁ କିଛି ମୌଳିକ ନୂତନ କାମ ଆଶା କରିବା ବୃଥା ।

ଏକଥା ସ୍ପଷ୍ଟ ଯେ ମୋ' ଜୀବନ, ତାହାର ମୂଲ୍ୟ ଯାହାବି ଥାଉ, ବର୍ତ୍ତମାନ ସମାପ୍ତ । ମୁଁ ବର୍ତ୍ତମାନ ଯେତେ ଯାହା କଲେ ମଧ୍ୟ ମୋ ଜୀବନର ମୂଲ୍ୟକୁ ଆଖିଦୃଶିଆ ଭାବରେ ବଢ଼େଇ ପାରିବି ନାହିଁ କି କମେଇ ପାରିବି ନାହିଁ । ଅନାସକ୍ତ ହେବା ବହୁତ କଷ୍ଟ ମୁଁ ଜାଣେ । ତଥାପି ମୁଁ ଭାବୁଛି ମୋ ଜୀବନ ଏକ ସଫଳ ଜୀବନ, ମତେ ଅନେକ ପୁରସ୍କାର ମିଳିଛି । ମୋ'ଭଳି ଦକ୍ଷତା ଥିବା ଗଣିତଜ୍ଞର ପ୍ରାପ୍ୟଠାରୁ ସେସବୁ ଆଦୌ କମ୍ ନୁହଁ । ମୁଁ କ୍ରମାଗତ ଭାବରେ ଅନେକ ଗୁଡ଼ିଏ 'ଆରାମଦାୟକ' ଓ ମର୍ଯ୍ୟାଦାପୂର୍ଣ୍ଣ ପଦପଦବୀ ଅଧିକାର କରିଛି । ବିଶ୍ୱବିଦ୍ୟାଳୟଗୁଡ଼ିକର ନିରସ କର୍ମସୂଚୀ ଗୁଡ଼ିକ ଦ୍ୱାରା ମୁଁ ବିଶେଷ ଅସୁବିଧାର ସମ୍ମୁଖୀନ ହୋଇନାହିଁ । ମୁଁ "ପାଠ ପଢ଼ାଇବା"କୁ ଘୃଣାକରେ ଓ ସେ କାମ ମତେ ବିଶେଷ କରିବାକୁ ପଡିନାହିଁ । ଯାହାକିଛି ମୁଁ

ପଢ଼ାଇଛି ସେସବୁ କେବଳ ଗବେଷଣା ତତ୍ତ୍ୱାବଧାନ ସମ୍ପର୍କିତ । ମୁଁ ବକ୍ତୃତା ଦେବାକୁ ଭଲପାଏ । ମେଧାବୀ ଓ ଦକ୍ଷ ପିଲାମାନଙ୍କ ଶ୍ରେଣୀ ଗୁଡିକରେ ଅନେକ ବକ୍ତୃତା ଦେଇଛି । ଗବେଷଣା ପାଇଁ ମୁଁ ପ୍ରଚୁର ଅବକାଶ ସମୟ ପାଇଛି ଓ ଗେବଷଣା ହିଁ ମୋ ଜୀବନର ଗୋଟିଏ ଶ୍ରେଷ୍ଠ ଆନନ୍ଦ ହୋଇ ରହିଆସିଛି । ଅନ୍ୟମାନଙ୍କ ସହ କାମ କରିବାରେ ମୋ ପାଇଁ ବିଶେଷ ଅସୁବିଧା ହୋଇନାହିଁ । ଏମିତିତ ମୁଁ ଦୁଇଜଣ ଅସାଧାରଣ ଜିନିୟସ ଗଣିତଜ୍ଞଙ୍କ ସହ ଦୀର୍ଘଦିନ ଧରି କାମ କରିବାର ସୁଯୋଗ ପାଇଛି । ସେ ସୁଯୋଗ ବଳରେ ହିଁ ମୁଁ ଗଣିତକୁ ଆଶାଠାରୁ ବହୁତ ଅଧିକ ଦେବାରେ ସକ୍ଷମ ହୋଇଛି । ସବୁ ଗଣିତଜ୍ଞଙ୍କ ଭଳି ମତେ ମଧ ବିଫଳତା ଓ ନୈରାଶ୍ୟର ସମ୍ମୁଖୀନ ହେବାକୁ ପଡିଛି କିନ୍ତୁ ସେସବୁ ମୋର ବିଶେଷ କ୍ଷତି କରିନାହାନ୍ତି କି ବିଶେଷ ଦୁଃଖ ଦେଇ ନାହାନ୍ତି । ହେତୁ ହେଲାପରେ ମତେ ଯଦି କେହି ମୋ' ଜୀବନ ଭଳି ଏକ ଜୀବନ ଯାଚି ଥାଆନ୍ତା ମୁଁ ତାକୁ ସାଦରେ ଗ୍ରହଣ କରି ଥାଆନ୍ତି ।

ଜୀବନରେ ମୁଁ "ଆହୁରି ଭଲ" କରି ପାରି ଥାଆନ୍ତି ବୋଲି ଭାବିବା ମୂର୍ଖାମୀ । ମୋର ଭାଷାଗତ ବା କଳାତ୍ମକ ଦକ୍ଷତା ନାହିଁ । ପରୀକ୍ଷାଭିତ୍ତିକ ବିଜ୍ଞାନରେ ଆଗ୍ରହ ମଧ ନାହିଁ । ହୁଏତ ମୁଁ ଜଣେ କାମଚଳା ଦାର୍ଶନିକଟିଏ ହୋଇ ପାରିଥାଆନ୍ତି । ସେଥିରେ ମଧ ଜଣେ ନୂତନ ମୌଳିକ ଦର୍ଶନ ସୃଷ୍ଟିକାରୀ ଶ୍ରେଣୀର ନୁହେଁ । ମୁଁ ଭାବୁଛି ମୁଁ ହୁଏତ ଜଣେ ଭଲ ଓକିଲ ହୋଇପାରିଥାଆନ୍ତି । କିନ୍ତୁ ବୌଦ୍ଧିକ କ୍ଷେତ୍ର ସବୁ ବାହାରେ ସାମ୍ବାଦିକତା ବୋଧେ ଏକମାତ୍ର ବୃତ୍ତି ଯେଉଁଥିରେ ସବୁଠାରୁ ଅଧିକ ସୁଯୋଗ ମୁଁ ନିଜ ପାଇଁ ଦେଖିପାରୁଛି । କିନ୍ତୁ ସାଧାରଣଭାବେ ବୁଝାଯାଉଥିବା ସଫଳତାକୁ ଜୀବନର ଏକମାତ୍ର ମାପକାଠି ଭାବରେ ଗ୍ରହଣ କଲେ ଏହା ନିଃସନ୍ଦେହ ଯେ ଗଣିତଜ୍ଞ ହେବାର ନିଷ୍ପତ୍ତି ମୋ ପାଇଁ ସମ୍ପୂର୍ଣ୍ଣ ନିର୍ଭୂଲ ଥିଲା ।

ମୁଁ ଯଦି ମୋଟାମୋଟି ଭାବରେ ଗୋଟିଏ ଆରାମ ଓ ଆନନ୍ଦ ଦାୟକ ଜୀବନ ଚାହିଁଥାଆନ୍ତି ତା'ହେଲେ ମଧ ମୋ ପସନ୍ଦ ଠିକ୍ ଥିଲା । ଆଇନ ପରାମର୍ଶଦାତା ବା ଷ୍ଟକ୍ ଦଲାଲ ବା ଜୁଆ ଖେଳୁଥିବା ଲୋକମାନେ ମଧ ଅଧିକାଂଶ କ୍ଷେତ୍ରରେ ଆରାମ ଓ ଆନନ୍ଦରେ ଜୀବନ ବିତାଉଛନ୍ତି ଯଦିଓ ସେମାନଙ୍କ ଉପସ୍ଥିତି ଦ୍ୱାରା ସମାଜଟା କିପରି ଅଧିକ ରୁଚିସମ୍ପନ୍ନ ହେଉଛି ବୁଝିବା କଷ୍ଟ । ସେମାନଙ୍କ ଜୀବନ ଭଳି ମୋ ଜୀବନ ଏତେଟା ଅର୍ଥହୀନ ନୁହେଁ କହିବାରେ କିଛି ସତ୍ୟତା ଅଛି କି ? ମତେ ଯାହା ଲାଗୁଛି ଏ ପ୍ରଶ୍ନର "ହଁ" ହିଁ ଗୋଟିଏ ମାତ୍ର ସମ୍ଭାବ୍ୟ ଉତ୍ତର । ତାହାମଧ ଗୋଟିଏ କାରଣ ପାଇଁ ।

ମୁଁ କୌଣସି "ଉପଯୋଗ ହେଲାଭଳି" କାମ କରିନାହିଁ । ମୋର କୌଣସି ସୃଷ୍ଟି ଦୁନିଆର ସୁଖସୁବିଧା କ୍ଷେତ୍ରରେ ପ୍ରତ୍ୟକ୍ଷରେ ହେଉ ବା ପରୋକ୍ଷରେ, ଭଲରେ ହେଉ ବା ମନ୍ଦରେ, କୌଣସି ପ୍ରଭେଦ ଆଣିବାରେ ସକ୍ଷମ ହୋଇନାହିଁ ବା ହେବାର ସମ୍ଭାବନା ମଧ ନାହିଁ । ମୁଁ ଅନ୍ୟ ଗଣିତଜ୍ଞମାନଙ୍କୁ ତାଲିମ ଦେବାରେ ସାହାଯ୍ୟ କରିଛି କିନ୍ତୁ ସେମାନେ ସମସ୍ତେ ମୋ' ଜାତୀୟ । ତେଣୁ ସେମାନଙ୍କ କାମ-ଯେତେଦୂରଯାଏ ମୁଁ ସେ କାମ କରିବାରେ ସାହାଯ୍ୟ କରିଛି - ସବୁ ମୋ କାମଭଳି ଅଦରକାରୀ । ବ୍ୟବହାର ଉପଯୋଗିତା ନ୍ୟାୟରେ ବିଚାରକଲେ ମୋ ଗାଣିତିକ ଜୀବନ ମୂଲ୍ୟହୀନ । ଗଣିତ ବାହାରେ ତ ସହଜେ ମୋ ଜୀବନର ମୂଲ୍ୟ ଅତି ସାମାନ୍ୟ । "ଅତି ସାମାନ୍ୟ" ଭଳି ଏକ ନିଷ୍ପତ୍ତିରୁ ମୋ ଜୀବନକୁ ମୁକୁଳେଇବାର ଗୋଟିଏ ମାତ୍ର ବାଟ ମତେ ଦେଖାଯାଉଛି । ଯେ ସୃଷ୍ଟି ଯୋଗ୍ୟ କିଛି ଜିନିଷ ମୁଁ ସୃଷ୍ଟି କରିଛି । ମୁଁ ଯେ କିଛି ସୃଷ୍ଟି କରିଛି ଏକଥା କେହି ଅସ୍ୱୀକାର କରିପାରିବେ ନାହିଁ; ପ୍ରଶ୍ନ କେବଳ ତା'ର ମୂଲ୍ୟକୁ ନେଇ ।

ତେଣୁ ମୋ ଜୀବନ ବା ମୁଁ ଯେଉଁ ଅର୍ଥରେ ନିଜକୁ ଗଣିତଜ୍ଞ ବୋଲି ଦାବି କରେ ସେହି ଅର୍ଥରେ ଅନ୍ୟ ଗଣିତଜ୍ଞମାନଙ୍କ ଜୀବନ ସପକ୍ଷରେ କେବଳ ଏତିକି ମାତ୍ର କୁହାଯାଇ ପାରିବ ଯେ ମୁଁ ଜ୍ଞାନଜଗତକୁ କିଛି ଦେଇଛି ଓ ଅନ୍ୟକେତେକଙ୍କୁ ସେହିଭଳି କିଛି ଦେବାରେ ସହାୟକ ହୋଇଛି । ଆଉ ଏହି "କିଛି" ଗୁଡିକର ମୂଲ୍ୟ, ଶ୍ରେଷ୍ଠ ଗଣିତଜ୍ଞ ବା କଳାକାର, ଶିଳ୍ପୀ ଓ ଚିତ୍ରକର ପ୍ରଭୃତିଙ୍କ ଚିରସ୍ମରଣୀୟ ଅକ୍ଷୟ କୀର୍ତ୍ତିରାଜି ତୁଳନାରେ ପରିମାଣରେ କମ୍‌ବେଶୀ ହୋଇପାରେ ସିନା କିନ୍ତୁ ଜାତି ଓ ମୂଲ୍ୟ ଭେଦରେ ନୁହେଁ ।

# ଟିପ୍ପଣୀ

ପ୍ରଫେସର ବ୍ରଡ୍ ଓ ଡଃ ସ୍ନୋ ଉଭୟ ମତେ କହିଛନ୍ତି ଯେ ବିଜ୍ଞାନର ଭଲ ଓ ମନ୍ଦ ଦିଗ ଗୁଡିକ ମଧ୍ୟରେ ଭାରସାମ୍ୟ ରକ୍ଷା କରିବାକୁ ହେଲେ ମୁଁ କେବଳ ଯୁଦ୍ଧ ଉପରେ ବିଜ୍ଞାନର ପ୍ରଭାବ ବିଷୟରେ ଅତିଶୟୋକ୍ତି କଲେ ଚଳିବ ନାହିଁ । ଆଉ ମୁଁ ଯେତେବେଳେ କେବଳ ସେ କଥା ହିଁ ଭାବୁଥିବି ସେତେବେଳେ ମଧ୍ୟ ମୋର ମନେରଖିବା ଉଚିତ ହେବ ଯେ ସମ୍ପୂର୍ଣ୍ଣ ମାତ୍ରାରେ କ୍ଷତିକାରୀ ପ୍ରଭାବ ଛଡା ବିଜ୍ଞାନର ଅନ୍ୟ ଅନେକ ଉପକାରୀ ପ୍ରଭାବ ଗୁଡିକ ମଧ୍ୟ ରହିଛି ।

ବିଜ୍ଞାନର ଭଲମନ୍ଦ ଦିଗ ବିଷୟରେ ବିଚାର ବେଳେ ଏକଥା ନିଶ୍ଚୟ ସତ ବୋଲି ସମସ୍ତେ ଜାଣନ୍ତି ଯେ;

(କ) ସମୁଦାୟ ଜନସଂଖ୍ୟାକୁ ଯୁଦ୍ଧ ପାଇଁ ସଙ୍ଗଠିତ କରିବା କେବଳ ବୈଜ୍ଞାନିକ ଉପାୟରେ ହିଁ ସମ୍ଭବ, (ଖ) ପ୍ରଚାର ମାଧ୍ୟମର ଶକ୍ତିକୁ ବିଜ୍ଞାନ ଏପରି ଭାବରେ ବହୁଗଣିତ କରିଛି ଯେ ଯାହା କଳନା କରିବା ଅସମ୍ଭବ । ଦୁଃଖର କଥା ଏହି ସମସ୍ତ ଶକ୍ତି କେବଳ ମନ୍ଦ ଉଦ୍ଦେଶ୍ୟରେ ବ୍ୟବହାର କରାଯାଉଛି, (ଗ) ବିଜ୍ଞାନ "ନିରପେକ୍ଷତା"କୁ ଏପରି ଏକ ଅସମ୍ଭବ ଓ ଅଯଥାର୍ଥ ସ୍ଥିତିରେ ପହଞ୍ଚାଇଦେଇଛି ଯେ ଗୋଟିଏ "ଶାନ୍ତିର ଦ୍ୱୀପଖଣ୍ଡେ" ରହୁନାହିଁ ଯେଉଁଠାରୁ ଯୁଦ୍ଧ ପରବର୍ତ୍ତୀ ସମୟରେ ମାନବିକତା ଓ ପୁନର୍ନିର୍ମାଣ କାମ ଆରମ୍ଭ କରାଯାଇପାରିବ । କହିବା ବାହୁଲ୍ୟ, ଏସବୁ କଥା ବିଜ୍ଞାନର ଖରାପ ଦିଗ ହିଁ ସୂଚାଇ ଦେଉଛି । ଅବଶ୍ୟ ଏକଥା ସତ ଯେ ଅପବାଦକୁ ଯେତେ ଜୋର ଦେଇ କହିଲେ ମଧ୍ୟ ବିଜ୍ଞାନର ଉପକାରିତା ଯେ ତା'ର ଅପକାରିତାକୁ ସମ୍ପୂର୍ଣ୍ଣ ଭାବେ ନିଷ୍ପ୍ରଭ କରିଦେଉଛି କଥାକୁ ଭୁଲ୍ ବୋଲି ପ୍ରମାଣ କରିବା ଦୁରୂହ ବ୍ୟାପାର । ଉଦାହରଣ ସ୍ୱରୂପ ଯଦି ପ୍ରତି ଯୁଦ୍ଧରେ ଏକକୋଟି ଲୋକ ବି ମୃତ୍ୟୁବରଣ କରନ୍ତି ତଥାପି ମଧ୍ୟ ବିଜ୍ଞାନର ପ୍ରଭାବରେ ମଣିଷର ହାରାହାରି ଜୀବନକାଳ ବୃଦ୍ଧିପାଉଛି ବୋଲି ମନ୍ତବ୍ୟ ଅକାଟ୍ୟ । ସଂକ୍ଷେପରେ କଥାଟି ହେଲା ମୋର ଅଠେଇଶତମ ପରିଚ୍ଛେଦଟି ଅତିରିକ୍ତ ଭାବେ "ଭାବପ୍ରବଣତା ପୂର୍ଣ୍ଣ ।"

ମୁଁ ଏ ସମାଲୋଚନାକୁ ବିରୋଧ କରୁନାହିଁ । କିନ୍ତୁ ମୁଖବନ୍ଧରେ ଉଲ୍ଲେଖ କରିଥିବା କାରଣ ଗୁଡିକ ଯୋଗୁ ମୋ ଲେଖା ଭିତରେ ସମାଲୋଚନା ଗୁଡ଼ିକର ଯଥାର୍ଥ ଉତ୍ତର ସ୍ଥାନୀତ କରିବା ମୋ' ପକ୍ଷରେ ସମ୍ଭବ ହେଉନାହିଁ । ତେଣୁ କେବଳ ପ୍ରାପ୍ତି ସ୍ୱୀକାର କରି ସନ୍ତୁଷ୍ଟ ରହୁଛି ।

ଡଃ ସ୍ନୋ ଅଷ୍ଟମ ପରିଚ୍ଛେଦ ବିଷୟରେ ମଧ୍ୟ ଆଉ ଗୋଟିଏ ଛୋଟିଆ ସୁନ୍ଦର କଥାଟିଏ କହିଛନ୍ତି । ତାଙ୍କ କହିବା କଥା ହେଲା ଯଦିବି ଆମେ "ଆର୍କମିଡିସ ସବୁଦିନ ପାଇଁ ମନେରହିବେ କିନ୍ତୁ ଏସିଲସ୍ ବିସ୍ମୃତିର ଗର୍ଭରେ ଲୀନ ହୋଇଯିବେ" କଥାକୁ ଗ୍ରହଣ କରିନେଉ ତଥାପି ବି ଗାଣିତିକ ଖ୍ୟାତି ସହିତ ଗୋଟିଏ ନାଁର ସମ୍ପୃକ୍ତି ଖୁବ୍ "ଅସ୍ପଷ୍ଟ" ନୁହେଁ କି ? କେବଳ ସେମାନଙ୍କ କୃତି ଗୁଡିକରୁ ଏସିଲସ୍ ଭଳି ବ୍ୟକ୍ତିମାନଙ୍କର ବ୍ୟକ୍ତିତ୍ୱ ସମ୍ବନ୍ଧରେ ଗୋଟିଏ ସୁସଂହତ ଚିତ୍ର ଆଙ୍କିବା ସମ୍ଭବ ହେଉଥିବାବେଳେ (ସେକ୍‌ସପିୟର ଓ ଟଲଷ୍ଟୟଙ୍କମାନଙ୍କ କ୍ଷେତ୍ରରେ ଏହା ଆହୁରି ସ୍ପଷ୍ଟ) ଆର୍କମିଡିସ ଓ ଇୟୁଡୋକ୍ସସ ସବୁ କେବଳ ଗୋଟିଏ ଗୋଟିଏ ନାଁ ମାତ୍ର ହୋଇରହିଯିବେ । ସେମାନଙ୍କ ଗଣିତରୁ ସେମାନଙ୍କ ଚରିତ୍ର ଫୁଟି ଉଠେ ନାହିଁ ।

ଥରେ ଟ୍ରାଫଲଗାର ଛକରେ ଥିବା ନେଲସନ ସ୍ତମ୍ଭ ବାଟଦେଇ ଯାଉଥିବାବେଳେ ମି:ଜେ.ଏମ୍.ଲୋମାସ ଏହି କଥାଟିକୁ ବହୁତ ସୁନ୍ଦର ଭାବରେ ଉପସ୍ଥାପନ କରିଥିଲେ । ସେ ମତେ ପଚାରିଲେ, "ଯଦି ଲଣ୍ଡନରେ ଗୋଟିଏ ସ୍ମୃତିସ୍ତମ୍ଭ ଉପରେ ତୁମର ପ୍ରତିମୂର୍ତ୍ତିଟିଏ ରଖାଯିବାର କଥା ଉଠେ ତେବେ ତୁମେ କ'ଣ ଚାହିଁବ - ତୁମ ପ୍ରତିମୂର୍ତ୍ତିକୁ ଚିହ୍ନି ହେଉ କି ନହେଉ ସ୍ତମ୍ଭଟିର ଉଚ୍ଚତା ଅଧିକ ହେଉ ନା ଉଚ୍ଚତା ଏପରି କମ୍ ହେଉ ଯେପରି ପ୍ରତିମୂର୍ତ୍ତିକୁ ପରିଷ୍କାର ଭାବରେ ଚିହ୍ନି ହେଉଥିବ ?"

ମୁଁ ତ ପ୍ରଥମଟିକୁ ନିଶ୍ଚୟ ପସନ୍ଦ କରିବି; ଡ଼ଃ ସ୍ନୋ ବୋଧହୁଏ ଦ୍ୱିତୀୟଟିକୁ ।

ଲମ୍ବୋଦର ପ୍ରସାଦ ସିଂହ ଉତ୍କଳ ବିଶ୍ୱବିଦ୍ୟାଳୟର ପଦାର୍ଥ ବିଜ୍ଞାନ ପ୍ରଫେସର ଭାବେ ୨୦୦୮ରେ ଅବସର ଗ୍ରହଣ କରିଛନ୍ତି ।

ଉତ୍କଳ ବିଶ୍ୱବିଦ୍ୟାଳୟର ୧୯୬୭ ମସିହାର ଶ୍ରେଷ୍ଠ ସ୍ନାତକ ଭାବରେ ସେ ମୟୂରଭଞ୍ଜ ସ୍ୱର୍ଣ୍ଣ ପଦକ ଲାଭ କରିଥିଲେ । ସେ ରେଭେନ୍ସା କଲେଜରୁ ପଦାର୍ଥ ବିଜ୍ଞାନରେ ଏମ୍.ଏସ୍‌ସି (୧୯୬୯), କଲିକତାର ସାହା ନ୍ୟୁକ୍ଲିୟର ଗବେଷଣା ପ୍ରତିଷ୍ଠାନରୁ ପୋଷ୍ଟ ଏମ୍.ଏସ୍‌ସି. ଡିପ୍ଲୋମା (୧୯୭୧) ଓ ଉତ୍କଳ ବିଶ୍ୱବିଦ୍ୟାଳୟରୁ ପିଏଚ୍.ଡି (୧୯୭୫) ରେ ଲାଭ କରିଥିଲେ ।

ସେ ଜର୍ମାନୀର ଡୋର୍ଟମଣ୍ଡ ବିଶ୍ୱବିଦ୍ୟାଳୟ (୧୯୭୮-୮୦) ଡବ୍ଲିନ ଇନଷ୍ଟିଚ୍ୟୁଟ ଫର ଆଡ୍‌ଭାନ୍‌ସଡ ଷ୍ଟଡିଜ୍ (୧୯୮୦-୮୨), ଜେନେଭାସ୍ଥିତ ୟୁରୋପୀୟ ନ୍ୟୁକ୍ଲିୟର ଗବେଷଣା କେନ୍ଦ୍ର (C.E.R.N.) (୧୯୮୫) ଓ ଇଟାଲୀର ଟ୍ରିଏଷ୍ଟେ ସହରରେ ଅବସ୍ଥିତ ଅବଦୁସ୍ ସଲାମ ଇଣ୍ଟରନେସ୍‌ନାଲ ସେଣ୍ଟର ଫର ଥିଓରେଟିକାଲ ଫିଜିକ୍ସ (୧୯୮୫-୯୦) ପ୍ରଭୃତି ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ ଅନୁଷ୍ଠାନ ମାନଙ୍କରେ ଗବେଷଣା କରିବାର ସୁଯୋଗ ପାଇଛନ୍ତି । କଣିକା ବିଜ୍ଞାନ ଓ ବ୍ରହ୍ମାଣ୍ଡ ବିଜ୍ଞାନ ତାଙ୍କ ଗବେଷଣାର କ୍ଷେତ୍ର ।

ଜଣେ ଶିକ୍ଷକ ଓ ଗବେଷକ ଭାବରେ ତାଙ୍କର ସୁଖ୍ୟାତି ରହିଛି । ବିଜ୍ଞାନର ପ୍ରଚାର ଓ ପ୍ରସାର ପାଇଁ ଟେଲିଭିଜନ କାର୍ଯ୍ୟକ୍ରମ, ପତ୍ରପତ୍ରିକା, ବହିଲେଖା ଓ ବିଭିନ୍ନ ସ୍କୁଲ କଲେଜ ବା ସଭାସମିତି ମାନଙ୍କରେ ବକ୍ତୃତା ଆଦି କାର୍ଯ୍ୟକ୍ରମରେ ତାଙ୍କର ଅବଦାନ ଉଲ୍ଲେଖନୀୟ । ତାଙ୍କ ଲିଖିତ "ଅଣୁରୁ ଅନ୍ତରୀକ୍ଷ" ବହିଟି ଓଡ଼ିଶା ବିଜ୍ଞାନ ଏକାଡେମୀ ଦ୍ୱାରା ୧୯୯୯ ମସିହାର ଶ୍ରେଷ୍ଠ ଜନପ୍ରିୟ ପୁସ୍ତକ ଭାବରେ ପୁରସ୍କୃତ ହୋଇଥିଲା । ତାଙ୍କ ଲିଖିତ ଅନ୍ୟ ଜନପ୍ରିୟ ବିଜ୍ଞାନ ପୁସ୍ତକଟି ହେଲା "ସରଳ ହିଁ ସୁନ୍ଦର", ବହିଟି ଯେଉଁ ବାରୋଟି ସମୀକରଣ ଆମ ବିଶ୍ୱଦୃଷ୍ଟିକୁ ନୂଆ ଦିଗ ଦେଇଛନ୍ତି ତାଙ୍କରି ଉପରେ ପର୍ଯ୍ୟବେଶିତ । ଏହାର ~~ଇଂରାଜି ସଂସ୍କରଣ~~ "Simple is Beautiful" ମଧ୍ୟ ସେ ଲେଖିଛନ୍ତି । ଏହା ଛଡ଼ା ଏନ୍.ବି.ଟି ର "Invetions that Changed the World" ବହିର ଦୁଇଭାଗକୁ ଓଡ଼ିଆ ଅନୁବାଦ କରିଛନ୍ତି, ବହି ଦୁଇଟି "କେତୋଟି ଯୁଗାନ୍ତକାରୀ ଉଦ୍ଭାବନ" ନାମରେ ପାଠକୀୟ ଆଦର ଲାଭ କରିଛନ୍ତି । ~~ପୃଥିବୀ ବିଖ୍ୟାତ ଗଣିତଜ୍ଞ ଜି.ଏଚ. ହାର୍ଡିଙ୍କ ଆତ୍ମ ଜୀବନୀକୁ "ଜଣେ ଗଣିତଜ୍ଞର ଆତ୍ମଚିନ୍ତନ" ନାଁରେ ମଧ୍ୟ ସେ ଓଡ଼ିଆରେ ଅନୁବାଦ କରିଛନ୍ତି ।~~

ମୂଲ୍ୟ : ଟ.୭୫/-

